# ଶ୍ରୀ ନୀଳାଦ୍ରୀଶ ଚଉତିଶା



କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କର ଅନ୍ତିମ ରଚନା

କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ବିରଚିତ

# ଶ୍ରୀ ନୀଳାଦ୍ରୀଶ ଚଉତିଶା

ସମ୍ପାଦନା :

**ପଣ୍ଡିତ ଶ୍ରୀ ସଦାଶିବ ରଥଶର୍ମା**

ଅଧ୍ୟକ୍ଷ ଶିକ୍ଷା, ସାଂସ୍କୃତିକ ସଂସଦ

ଶ୍ରୀ ଜଗନ୍ନାଥ ମନ୍ଦିର, ପୁରୀ ।

ଉପସ୍ଥାପକ :

ପୁରୀର ବିଦ୍ୟାନୁରାଗୀ ଜିଲ୍ଲାପାଳ Reg

**ଶ୍ରୀ ଅଶୋକ କୁମାର ମିଶ୍ର** ମହୋଦୟଙ୍କ ଦ୍ୱାରା

ନୀଳାଦ୍ରୀଶଙ୍କ ଚରଣରେ ସମର୍ପିତ ।

ପ୍ରକାଶକ :

**॥ ସତ୍ୟଗ୍ରନ୍ଥନିକେତନ ॥**

ଶ୍ରୀ ଜଗନ୍ନାଥ ମନ୍ଦିର, ପୁରୀ - ୭୫୨୦୦୧

# ସାମାନ୍ୟାଭାଷ

ଉତ୍କଳୀୟ ସାହିତ୍ୟ ଗଗନରେ କବିସମ୍ରାଟ ଉପେନ୍ଦ୍ରଭଞ୍ଜଙ୍କର ଅବଦାନ ଜାତିର ଗୌରବ ଓ ରମଣୀୟ ଭୂଷଣ ଅଟେ । ତାଙ୍କର ଅମୃତମୟ କୃତି ମଧ୍ୟରେ ପ୍ରଭୁ ଜଗନ୍ନାଥଙ୍କର ପ୍ରଶସ୍ତି ଦେଖିଲେ ମନେହୁଏ ଭଞ୍ଜ ଯଥାର୍ଥରେ ଜାଣିଥିଲେ "ପୁରୁଷୋତ୍ତମ କ୍ଷେତ୍ର ସମଗ୍ର ଭାରତୀୟ ସଂସ୍କୃତିର ପ୍ରାଣକେନ୍ଦ୍ର" । ରସିକହାରାବଳୀ, ସୁଭଦ୍ରା ପରିଣୟ, କୋଟିବ୍ରହ୍ମାଣ୍ଡସୁନ୍ଦରୀରେ କବିପୁଙ୍ଗବ ଯେଉଁପରିଭାବେ ପୁରୁଷୋତ୍ତମ ପ୍ରଶସ୍ତି କରିଛନ୍ତି ! ତାହା ପ୍ରଣିଧାନ ଯୋଗ୍ୟ ଓ ଗମ୍ଭୀରାନ୍ତଗମ୍ଭୀର ହେଲେ ମଧ୍ୟ, ସେଥିରେ ସେ ତୃପ୍ତ ହୋଇନଥିଲେ, ତେଣୁ ଲେଖିଲେ "ପୁରୁଷୋତ୍ତମ କ୍ଷେତ୍ର ମହାତ୍ମ୍ୟ" ଯାହା ଅଦ୍ୟାବଧି ଲୋକ ଲୋଚନକୁ ଆସିନାହିଁ । 'ନହି ତୃପ୍ତ ପରଂ ସୁଖମ୍' ନ୍ୟାୟରେ ସାରସ୍ୱତ ସାଧନାର ମହୁଜମଣି ପୃଥ୍ୱୀର ଧୂମୁସର ମଠରେ ପୂର୍ବପୁରୁଷଙ୍କର ମହତ କୀର୍ତ୍ତିରେ ସମ୍ମାନିତ ଅଭିବନ୍ଦିତ ହେବା ସଙ୍ଗେ ସଙ୍ଗେ ପରିଣତ କାଳରେ ପ୍ରଭୁ ପୁରୁଷୋତ୍ତମଙ୍କର ଚରଣରେ ସମର୍ପଣ କଲେ ଜଗନ୍ନାଥ ଚେତନାର ଚରମ ନିଦର୍ଶନ "**ନୀଳାଦ୍ରୀଶ ଚଉତିଶା**" ନୀଳାଦ୍ରୀଶ ଚଉତିଶାର ଅଧ୍ୟୟନରୁ ଜଣାଯାଏ କବିସମ୍ରାଟ ଗୀର୍ବାଣ ସମ୍ରାଟଙ୍କୁ ଯେପରି ହୃଦୟରେ ରଖିଥିଲେ ଅନ୍ୟ କେହି ମହାପୁରୁଷ ଏତେବାଟ ଯାଇନାହାନ୍ତି, ଏହା ସୁଧୀଗଣ ଅନୁଭବ କରିପାରୁଥିବେ ।

ସନ୍ ୧୯୫୬ ରେ ଦାଣ୍ଡେଦ୍ୟାଧର ପୁର ଶାସନର ଶ୍ରୀ ଭୁବନେଶ୍ୱର ରଥ ଶ୍ରୀ ନୀଳାଦ୍ରୀଶ ଚଉତିଶା ପାଣ୍ଡୁଲିପି ପ୍ରଦାନ କରିବା ପରେ ତାହା ଭଞ୍ଜ କଞ୍ଜ ଚରଣାଶ୍ରିତ ବଞ୍ଛାନିଧିଚରଣଙ୍କୁ ମୁଁ ଦେବାରେ ସେ ଗଦ୍ ଗଦ୍ ହୋଇପଡ଼ିଥିଲେ ଓ ସେହି ବର୍ଷ

"ଭଂଜପ୍ରଭା"ରେ ତାହାର କିୟଦଂଶ ପ୍ରକାଶ ପାଇଲା ଏବଂ ଓଡ଼ିଶା ସାହିତ୍ୟ ଏକାଡେମୀ ୧୯୭୭ରେ "କୋଣାର୍କ" ର ଉପେନ୍ଦ୍ରଭଂଜ ବିଶେଷାଙ୍କରେ ଆଉ କେତେପଦ ପ୍ରକାଶିତ ହୋଇଥିଲା, ଯାହାର ୩ ଗୋଟି ପଦ ସୁମଧୁର କଣ୍ଠରେ ଫଳକାଭୂତ ହୋଇଛି ସେହି ରେକର୍ଡଟି ମୁଁ ଶୁଣି ସୁଖୀ ହୋଇଛି । ଏହି ମହାନ୍ କୃତିର ଇଂରାଜୀ ଅନୁବାଦ, ହିନ୍ଦି ଓ ଓଡ଼ିଆ ଅନୁବାଦ ଟିପଣୀ ସହ ଭଂଜ ସରଣୀର ପଥିକ ଡା: କୃଷ୍ଣପ୍ରସାଦ ମିଶ୍ର ମହୋଦୟ ପ୍ରସ୍ତୁତ କରାଇ କୌଣସି ଯନ୍ତ୍ରାଳୟରେ ପ୍ରଦାନ କରିଛନ୍ତି ତତ୍ପୂର୍ବରୁ ତାହାର ଏକ ସୁଲଭ ସଂସ୍କରଣ ପ୍ରକାଶ କରୁଅଛି । ଏହା ପ୍ରାଚୀନେଶ୍ୱର ପ୍ରଭୁଙ୍କର ପ୍ରତି ସୁଧୀ ଜନମାନଙ୍କର ପ୍ରୀତି ଆକର୍ଷଣ କଲେ କୃତାର୍ଥ ହେବି ।

ଏହି ପ୍ରକାଶନରେ ସତ୍ୟବ୍ରହ୍ମନିକେତନର ଭ୍ରାତୃକଳ୍ପ ଦାମୋଦର ପ୍ରାଥମିକ ଶିକ୍ଷା ସାସ୍ତ ତକ ସସଦର ଗୁରୁମାନଙ୍କ ମଧ୍ୟରୁ ଶ୍ରୀ ଲୋକନାଥ ସୃଜାପଣ୍ଡା (କାହ୍ନୁ) ଶ୍ରୀ ଗୋପୀନାଥ ପ୍ରତିହାରୀ ପ୍ରମୁଖଙ୍କର ସହଯୋଗ ତଥା ମୋର ବନ୍ଧୁ କୃଷି ଉପ-ନିର୍ଦ୍ଦେଶକ ଶ୍ରୀଯୁକ୍ତ ନାୟକଙ୍କ ତଥା ଶ୍ରୀ ମଦନମୋହନ ସେନା, ରଘୁନାଥପୁର କଟକ ଙ୍କର ପ୍ରେରଣା ସ୍ୱୀକାର ଯୋଗ୍ୟ । ହନୁସର ମଠର ତତ୍ତ୍ୱବଧାରକ ମହାନ୍ତ ୰ ବାଳମୁକୁନ୍ଦ ଦାଶ ଶର୍ମା (ବଡ଼ଛତା)ଙ୍କ ସୌଜନ୍ୟତାରୁ ମିଳିଥିବା ୨ଯୁ ପାଣ୍ଡୁଲିପି ପାଇଁ ମୁଁ ତାଙ୍କଠାରେ ଚିରକୃତଜ୍ଞ ।

'ଜୟ ଜଗନ୍ନାଥ'

ବିନୟାବନତ

**ଶ୍ରୀ ସଦାଶିବ ରଥଶର୍ମା**

୨୨-୫-୮୦ ପୁରୀ

# ଶ୍ରୀ ନୀଳାଦ୍ରୀ ଚନ୍ଦ୍ର ବକ୍ରୋକ୍ତେ ଭବମ୍

## ଶ୍ରୀ ଗଣେଶାୟ ନମଃ

କର ପଦ ଯୋଡଣ କମ୍ବୁରାଜ୍ୟ ରାଜନ
କମଳାବର ସନ୍ନିଧାନେ
କ ବର୍ଣ୍ଣିବ ଭାବନ୍ତ କଞ୍ଜସୁତ ଭାବନ୍ତ
ଯେ କଞ୍ଜ ଚରଣ ଲକ୍ଷଣେ
ହେ ନୀଳାଦ୍ରିଶ
କହନ୍ତ କୁଟିଳ ବହନ୍ତ
ହରି ତ ବନ୍ଧ ବହିଅଛ
କୁମ୍ଭନାଭ କୁଟିଳ କାଳୁଷ୍ଟରେ ସରଳ
କରନ୍ତୁ ହୀନ କି କରୁଛ ।

---

ଅତି ବିନମ୍ରରେ ଉତ୍କଳବ ବଦ୍ଧ ହୋଇ ଶଂଖକ୍ଷେତ୍ରେଶ୍ୱର କମଳାରମଣଙ୍କ ନିକଟରେ ଭଂଜକବି ପୁଙ୍ଗବ ବିଚାରୁଛନ୍ତି ମୁଁ କଅଣ ଅବା ଭାବିବି ? ପଦ୍ମଜ ବ୍ରହ୍ମା ଯେଉଁ ବିଷୟରେ ଚିନ୍ତା କରନ୍ତି, ଯେଉଁ ପାଦପଦ୍ମ ଭାବନାରେ ବା ଦର୍ଶନରେ ନିରତ ରହୁଥାନ୍ତି, ହେ ନୀଳାଦ୍ରୀଶ ଆପଣ ତ ବ୍ୟକ୍ତଭାବରେ କୁଟିଳ ମାନଙ୍କୁ ଧାରଣ କରିଛନ୍ତି । ଚକ୍ର ଓ ଶଂଖନାଭି ଉଭୟେ କୁଟିଳ ହେଲେ ମଧ୍ୟ (କିଙ୍କର) ଜନ ମାନଙ୍କ ନିମନ୍ତେ ତାହା ସରଳ ହୋଇଯାଏ । ଏପରିକି ଆପଣ ତୋହିଣି କାକକୁ ସରଳ ଭାବରେ ଚକ୍ରଶଂଖ ଚିହ୍ନରେ ପରିଭୂଷିତ କରଉଛନ୍ତି (୧) ତାହା ତୁଳନାରେ ଏ ଦିବ୍ୟ ମାନବକୁ ହୀନ ମନେ କରୁଅଛନ୍ତି କି ?

(୧) କିଂ ତତ୍ର ମନୁଷ୍ୟ ଯତ୍ର କାକୋଽପି ବିଷ୍ଣୁଲକ୍ଷଣଂ

ଭଂଜ ଏହି ବିଷୟକୁ ଭିନ୍ନ ଆକାରରେ ବର୍ଣ୍ଣନା କରି ଅଛନ୍ତି ତାହା

ଖର୍ବ ମଣି ଖଗେଶ                    ଖଣ୍ଡ ବଷଯୁ ବଶ
ଖଣ୍ଡ, କଟଳ ତଳେ ଆଶା
ଖଟ୍ବାଙ୍ଗ ଥର ସ୍ରଜ !                    ଖଳଖଣ୍ଡନ ଧ୍ବଜ
ଖ୍ୟାତାଦ୍ରିଂ ଏକାନ୍ତ ଭରସା
ହେ ମାଳଦ୍ରୀଶ
ଖେଟରେ ଶରଣ ସମ୍ବାଳ୍କୁ
ଖେଚର କୁଳ ପ୍ରତିପାଳ୍କୁ
ଶ୍ରୀଖଣ୍ଡ ଗନ୍ଧେ ଶୋଭା                    ଖୁଦ ପାଇଲ ଲୋଭା
ଖଟଲ୍ବା ଜନରେ ଦଯାଳ୍କୁ ॥

---

ଅତି ହୀନ ବୋଲି ମନେକରି ହେ ଗରୁଡଙ୍କର ପ୍ରଭୁ ବିଷୟ ରୂପକ ବିଷକୁ ନାଶକରନ୍ତୁ । ଏହି ଆଶାରେ ଆପଣଙ୍କ ଏକାନ୍ତ ନଗ୍ରରେ ପଡିଅଛି । ହେ ଖଟ୍ବାଙ୍ଗଧାରୀ ଭୈରବ ଗଣଙ୍କ ମଧ୍ୟରେ ଶ୍ରେଷ୍ଠ (୧) ଖଳ ମୋଚନ ବାନା ଉଡାଇଥିବା ପ୍ରଭୁ ଆପଣଙ୍କର ପ୍ରସିଦ୍ଧ ଚରଣ ପଙ୍କଜରେ ଭରସା ବାନ୍ଧିଅଛି, ହେ ନୀଳଶୈଳେଶ (ଖେଟ) ନିୟମ ବା ଅନୁଶାସନ ରୂପରେ ଶରଣ ରକ୍ଷା କରିବା ସଂଙ୍ଗେ ସଂଗେ (ଖେଚର) ପାରାବତ ସହସ୍ରଙ୍କୁ ପ୍ରାସାଦରେ ରଖି ଆପଣ ପ୍ରତିପାଳନ କରନ୍ତି । ଶ୍ରୀଖଣ୍ଡ ଚନ୍ଦନ ଲେପନରେ ସୁଖି ବା ଆପ୍ୟାୟିତ, ଖୁଦ କଣା ଲୋଭରେ ସୁଦାମା ଘିତ ନିକଟରେ ଲୋଲୁପତା (୨) ପ୍ରକାଶକାରୀ ପ୍ରଭୁ ଆପଣ ନିତ୍ୟ ସେବକ ଜନରେ ଦୟାବାନ ଅଟନ୍ତି ।

(୧) ବିମଳା ଭୈରବୀ ଯତ୍ର ଜଗନ୍ନାଥ ଭୈରବ 'ଦେବୀଭାଗବତେ'
(୨) ସୁଦାମାଙ୍କର ପବିତ୍ରସ୍ମୃତିରେ ନିତ୍ୟ ଖୁଦୁପାଚଡି କଡମା ନାମକ ନୈବେଦ୍ୟ ଭୋଗ ଲାଗିଥାଏ ।

★ ପତାକା ଅଞ୍ଚଳ ଚଞ୍ଚଳ ତାଳେ ପାପୀ ଅବା

ରାଃହା

ଗହନ ତୋ ଗରିମା
ଗର୍ଗ ଜାଣନ୍ତି ସୀମା
ଗଣନେ ଗଣୀ କେ ଭେଦିବ
ଗୀର୍ବାଣ ଚୂଡ଼ାମଣି
ଗୁହାନନ୍ଦୀ, ସର୍ବାଣି
ଗୁପ୍ତାଷ୍ଟଚକ୍ରେ ସେବା ସେବ୍ୟ
ହେ ନୀଳାଦ୍ରୀଶ
ଗଣ ନାୟକ ବନ୍ଦ୍ୟ ହର
ଗଣନାୟକ ତନୁ ଧାର
ଗୂଢ଼ ଆନନ୍ଦ ତବ
ଗଣ୍ଡ କିବା ଗମିବ
ଗିରୀଶ ଗୂଢ଼ତତ୍ତ୍ୱ ଧାର ॥

---

ହେ ନିଳାଦ୍ରୀଶ (ଗରି) ଆପଣଙ୍କ ଗଉରଣ ଅଗମ୍ୟ, ଗର୍ଗମୁନି କିଛି କିଛି ତତ୍ତ୍ୱ ଜାଣନ୍ତି । ଗଣନା ଦ୍ୱାରା ଆପଣଙ୍କ (ଗରୀ) ବା ଆଦି କଥା କେଉଁ ବ୍ୟକ୍ତି ଜାଣିପାରିବ ? ହେ ଗୀର୍ବାଣ ଚୂଡ଼ାମଣି ଦେବ ଦେବ ! ନୀଳକନ୍ଦର ରୂପକ ଗୁହାରେ ବାସ କରି ଗୁପ୍ତରେ ଅଷ୍ଟଶକ୍ତି ବେଷ୍ଟିତ ଶକ୍ତି ଚକ୍ରରେ ଆପଣ ସେବା ପାଉଅଛନ୍ତି । କଳ୍ପପାଦପ ତଳରେ ଗଣେଶ ରହି ଆପଣଙ୍କୁ ସେବା କରୁଛନ୍ତି । ଆପଣ ମଧ୍ୟ ଗଣନାଥଙ୍କ ରୂପ ଧାରଣ କରୁଛନ୍ତି ଆପଣଙ୍କ ଗୂଢ଼ ରୂପତତ୍ତ୍ୱ କିଏ ବୁଝି ପାରିବ ? ବିଶେଷରେ (ଗଣ୍ଡ) ମୂର୍ଖ ଜନ କଅଣ ବା ଜାଣିବ ? ହେ ନୀଳଗିରି ପତି ଆପଣଙ୍କ ବିଗ୍ରହ ତତ୍ତ୍ୱ ଅତୀବ ଗୂଢ଼ ଅଟେ ।

୧- ଗର୍ଗ କୃଷ୍ଣାବତାରେ ନାମ କରଣ ବେଳେ କହିଛନ୍ତି ।

୨- ସ୍ୱାରୋଚିଷୋନ୍ତରେ ଚୈବ ଆର୍ବିଭୂର୍ତଃ କୃପାନିଧିଃ
ଆଜକୁ ଏକଶତ ଛଅ ଲକ୍ଷ କୋଟି ବାଷଠି ଲକ୍ଷ ଅନତ୍ରିଂଶ ହଜାର ୫୩ ତେପନ ବର୍ଷ ପୂର୍ବେ ଆର୍ବିଭୂର୍ତ ପ୍ରଭୁ ।

୩- ବିମଳା, ଉତ୍ତରଚଣ୍ଡ୍ୟାଦି ଅଷ୍ଟଶକ୍ତି ପରିବେଷ୍ଟିତ ଶକ୍ତିପୀଠ ଯାହାଙ୍କର ପୂଜନ ପୁରୁଷୋତ୍ତମ ଅର୍ଚ୍ଚନାର ଏକ ବିଶେଷ ଅଂଶ ଅଟେ ।

★ ଚନ୍ଦ୍ରି ରୁଣ୍ଡି ଭୂତ ଖଣ୍ଡିତ କରେ ଭୟ ଯେତେକ

ର:ହା

- ସ୍ନାନ ଯାତ୍ରାରେ ଶ୍ରୀ ଗଣପତି ଭଟ୍ଟଙ୍କୁ ଗଣେଶ ରୂପ ଦର୍ଶନ ଦେଇଥିବା ସ୍ମୃତିରେ ଗଣେଶ ବେଶ ଧାରଣ କରନ୍ତି ।

ଘଟଣ ଦେଖିବାରେ ଘନ ଘୋଟିଛୁ ଘୋରେ
ଘେନଛ ପ୍ରଭୁ ଗୂଢ଼ ତନୁ
ଘଟସ୍ଥର ଭିଆଣି ଘରକୋଣେ ରୋହଣୀ
ଘୋଟିବା ରାଧା ରସ ଦନୁ
ହେ ମାଳାଦ୍ରୀଶ
ଘଟେ ସେ ଅପ୍ରକଟ ଛଟ
ଘଡ଼ିଏ ନ ସମ୍ଭାଳି ହଟ
ଘଉଡ଼ାଇ ହଳୀଙ୍କୁ ଘେନଣ ଭଜନଙ୍କୁ
ଘେନାଇ ଦେଲ ଏ ଘଟ ॥

---

ଆପଣଙ୍କର ଆକାର ଦେଖି ମହା ସନ୍ଦେହର ଅନ୍ଧକାର ମାଡ଼ିବସୁଛି । ପ୍ରଭୁ ବାସ୍ତବରେ ଆପଣ ଏକ ତତ୍ତ୍ୱପୂର୍ଣ୍ଣ ଶରୀର ବହନ କରିଛନ୍ତି । ଏହି ଘଟନାର ଏକ ସୂତ୍ର 'ମହାଭାବ ପ୍ରକାଶା'ଦି ଗ୍ରନ୍ଥମାନଙ୍କରେ ଦେଖାଯାଏ ଯେ ମାତା ରୋହିଣୀଙ୍କର ବଚନାନୁସାରେ ଏକ ନିଭୃତ କୁଞ୍ଜରେ ରାଧାତତ୍ତ୍ୱ ପରି ଅପ୍ରକଟ ନିର୍ଗୁଣ ତତ୍ତ୍ୱର ଗଭୀର ଆଲୋଚନା ହେବା ଦେଖି ନୀଳାଦ୍ରୀନାଥ ସେ ସ୍ଥାନରେ ଅପ୍ରକଟ ଲୀଳା ପ୍ରକାଶ କରିଲେ ସାମାନ୍ୟ ମାତ୍ର ଅପେକ୍ଷା ନକରି ହଳଧର ଓ

ଭଗିନୀ ଯୋଗମାୟାଙ୍କ ଗହ୍ୱରରେ ଶୁଣ୍ଣୁ ଶୁଣ୍ଣୁ ନିର୍ଗୁଣସୂଚକ ଶରୀରରେ ପ୍ରକଟିତ ହେଲ । (ରାଧା ତତ୍ତ୍ୱର ନିର୍ଗୁଣ ତତ୍ତ୍ୱ ଶ୍ରବଣରେ ଆପଣଙ୍କ ସଗୁଣ ଲୀଳା ବିଗ୍ରହ ଏବଂଭୂତଅପ୍ରକଟ ଗୁପ୍ତତତ୍ତ୍ୱ ବିଶିଷ୍ଟ ରୂପରେ ପ୍ରକାଶ ପାଇଲ । ) ରାଗାନୁଗାବାଦୀମାନେ ଜଗନ୍ନାଥଙ୍କର ଅପ୍ରକଟ ବିଗ୍ରହଙ୍କୁ ଏହି ଆଖ୍ୟାୟିକାଦ୍ୱାର ପ୍ରେମମୟ ବିଗ୍ରହ ମାନନ୍ତି ।

ଓଁକାର ମନ୍ତ୍ରସାର ଓଁକାର ଅକ୍ଷର
ଓଁକାର ଆକାର ଧରିଲ
ଓଁକାର ବର୍ଣ୍ଣ ମାତ୍ରା ଓଁକାର ସର୍ବଜ୍ଞତା
ଓଁକାର ବ୍ରହ୍ମରୂପ ନେଲ
ହେ ନୀଳାଦ୍ରୀଶ
ଓଁକାର ଅପ୍ରକଟ ସ୍ୱର
ଓଁକାର ବ୍ରହ୍ମର ବିକାର
ଓଁକାର ତତ୍ତ୍ୱ ବାର ଓଁକାର ନିର୍ବିକାର
ଓଁଅ ବୋଇଲେ ଓଅ କର ॥

---

ଓଁ ଇତି ଅକ୍ଷର ମନ୍ତ୍ରମାନଙ୍କ ମଧ୍ୟରେ ଶ୍ରେଷ୍ଠ ଓ ପାପହର ବର୍ଣ୍ଣ ହୋଇଥିବାରୁ ସେହି ରୂପକୁ ଗ୍ରହଣ କରିଲ । ଓଁକାରର ପ୍ରତ୍ୟେକ ମାତ୍ରା ମଧ୍ୟ ପ୍ରକଟ ହେଲ, ଓଁକାର ଜାଣିବା ବ୍ୟକ୍ତି ସର୍ବଜ୍ଞ ଅଟନ୍ତି ତେଣୁ ଓଁକାର ରୂପକ ବ୍ରହ୍ମ ସ୍ୱରୂପ ଧାରଣ କରିଲ ସେ ଓଁକାର ଅପ୍ରକଟ ନାଦ ଓ ବ୍ରହ୍ମର ସୂଚକ ଅଟନ୍ତି ତାହା ଜାଣି ସେହି ନିର୍ବିକାର ତତ୍ତ୍ୱ ନେଇ ରୂପବନ୍ତ ହୋଇଛ ଓ ଡାକିଲ ମାତ୍ରେ ଶୁଣୁଅଛ । ଅର୍ଥାତ ଆପଣଙ୍କର ଏହି ଅପ୍ରକଟ ରୂପ ହିଁ ପ୍ରଣବ ରହସ୍ୟ ଅଟେ । "ଇତିସ୍ତୁତା ସୁରେଶାନା" ଦେବ ପ୍ରଣବ ରୂପୀଣଃ ରୂପରେ ଶାସ୍ତ୍ର ଆପଣଙ୍କୁ ସ୍ୱୀକାର କରିଛି, "ସୂତସଂହିତା" "ଇନ୍ଦ୍ରନୀଳମଣି ପୁରାଣ"

ପ୍ରଭୃତି ପ୍ରାଚୀନ ଗ୍ରନ୍ଥମାନଙ୍କରେ ଜଗନ୍ନାଥ ଓଁକାର ରୂପର ପ୍ରତୀକ ବୋଲି ଗୃହିତ ।

ଆବିର୍ଭୂତ ଜଗନ୍ନାଥ ନୀଳାଦ୍ରୀ କନ୍ଦରାଳୟେ
ଅକ୍ଷର ବ୍ରହ୍ମରୂପାୟ ସଚ୍ଚିଦାନନ୍ଦ ରୂପିଣେ
ଅକାର ନେତ୍ର ଯୁଗ୍ମଷ୍ଠ ଉକାର ଅଧରାମୃତଂ
ମକାର ମୌଳୀ ମଧ୍ୟେଚ ନାଦ ବିନ୍ଦୁ ସମନ୍ୱିତ

ନୀଳାଦ୍ରୀ ମହୋତ୍ସବର ଅଭିଷେକ ପ୍ରାର୍ଥନା
ମତ ଲିଖିତ ଓଁକାର ଉପାସନା ଇତି ପୁସ୍ତକ ଦ୍ରଷ୍ଟବ୍ୟ

ଚୌର ଚତୁର ମଣି                ଷ୍ଟୁର ପଣ ଜାଣି
ଚଣ୍ଡି ଏ ଚନ୍ଦ ରଚିଛନ୍ତି
ଚେଳ ଚଘୃର ବୋଳଣ                ଚଉ ଚଘୃର ପ୍ରମାଣ
ଷ୍ଟୁଟଡ଼ାରରେ ଚଳାବନ୍ତି
ଚହ୍ନ ନଳାଦ୍ରୀଶ
ଚଙ୍ଖ ଚହ୍ନଠା ଚହ୍ନଳ
ଷ୍ଟୃରଣ ଗୃର ମାଳ ମାଳ
ଚନ୍ଦ ଚଣ୍ଡ ଚହ୍ନବାକୁ                ଚଳ ଦକ୍ଷିଣୁ ତାକୁ
ଚରଣାମୃଥ କଲ କାଳ ॥

---

ହେ ଚୌର ଯାର ଶିଖାମଣି ତୁମ୍ଭର ଏ ପ୍ରକାର ଚତୁରଙ୍ଗ ଜାଣି ଚଣ୍ଡିଏ (ଅଷ୍ଟଚଣ୍ଡି) ଏକ ଚକ୍ରାକାର ବ୍ୟୁହ ରଚନା କରି ରକ୍ଷା କରିଅଛନ୍ତି ଅର୍ଥାତ ସ୍କନ୍ଦ ପୁରଣାଦିରେ ବର୍ଣ୍ଣିତ ହୋଇଛି ଯେ ଷୋଡଶ ପୁତ୍ରୀ ଚଣ୍ଡରୂପା, ବାରହି, ବାମେଳି, ସପ୍ତଉଗ୍ନୀ ଲମ୍ବାଦେବୀ, ହରଚଣ୍ଡୀ, ଅର୍ଦ୍ଧଶୋଷଣୀ ଏହି ଅଷ୍ଟ ଶକ୍ତି ବିଶିଷ୍ଟ ଚକ୍ର ଶ୍ରୀମହାପ୍ରଭୁଙ୍କର ରକ୍ଷୟତ୍ରୀ ରୂପରେ ରହିଅଛନ୍ତି । ଆପଣ ଗୋପାଙ୍ଗନା

ମାନଙ୍କର ବସ୍ତ୍ର ଓ ଭକ୍ତଜନ ମାନଙ୍କର ଚିତ୍ତକୁ ଗ୍ରେସଇଥିବା ଅପରାଧରେ ଆପଣଙ୍କୁ ଭକ୍ତଜନମାନେ ପାଟଡୋରରେ ବାନ୍ଧି ଦଣ୍ଡ ଦେଉଅଛନ୍ତି, ଯେତେବେଳେ ଗୁର୍ଜରୀ ବାଦ୍ୟଘୋଷ, ସ୍ମରଣ, ସ୍ମର-ମାନଙ୍କ ଦ୍ୱାରା ଏହା ଘୋଷଣା କରାଯାଏ । ଆପଣଙ୍କର ସୁଦର୍ଶନ ଚକ୍ରର ତେଜ ପ୍ରଖର ହେବାରୁ ଭକ୍ତମାନେ ତାହାଙ୍କ ତେଜରେ ଆପଣଙ୍କ ଶ୍ରୀଚରଣ ପାଖକୁ ନଯାଇପାରିବାରୁ ଆପଣ ଦୁଃଖିତ ହୋଇ (ଚଳି) ତାଙ୍କୁ ଦକ୍ଷିଣ ହସ୍ତରୁ କାଢ଼ିଦେଇ ସେହି ତେଜଙ୍କର ବର୍ତ୍ତୁଳ ରଥଚକ୍ର ପରି ସୁଦର୍ଶନଙ୍କୁ କୀଳ ବା ସ୍ତମ୍ଭ ପରିକରି (ବାମଦିଗରେ) ସ୍ଥାପନ କରିଅଛ । ଭକ୍ତଜନଙ୍କ ପାଇଁ ସୁଦର୍ଶନଙ୍କର ତେଜକୁ ହରଣ କରି ତାହାଙ୍କୁ ଆହ୍ଲାଦିନୀ ଶକ୍ତି ରୂପରେ ପ୍ରେମ ଭାବରେ ରାଧାଷ୍ଟମୀଦିନ ରାଧାଭାବରେ ଉପଯାନା କରାଯିବା ଜଗନ୍ନାଥ ମନ୍ଦିରର ବିଶେଷତ୍ୱ ଅଟେ । (ତପସ୍ୱି ହନୁମାନ ପୁସ୍ତିକା ଦ୍ରଷ୍ଟବ୍ୟ)

ଛଟକରେ ଅକ୍ଷର ଛଳରେ ଆଦ୍ୟସ୍ୱର
ଛନ୍ଦେ ଶୁକଳ ଫଣି ଜାଣ
ଛଟକାଙ୍ଗୀ ସେ ଆଦ୍ୟା ଛନ୍ଦେ ଉକାର କାଦ୍ୟା
ଛୁପ୍ୟାରେ ବର୍ଣ୍ଣ ଯେ ଅରୁଣ
ହେ ନୀଳାଦ୍ରୀଶ
ଛଦ୍ମେ ବହୁଅଛ ରୂପ
ଛୁପ୍ୟାରେ ମକାର ସ୍ୱରୂପ
ଛନ୍ଦ ପ୍ରଣବାକ୍ଷର ଗୁହ୍ୟସାର ବେଦ୍ଧର
ଛନ୍ଦେ ବହିଲ ଗୋପ୍ୟ ରୂପ ।।

---

ଚକ୍ରକୁ ସ୍ତମ୍ଭପରି କଳ୍ପପ୍ରାୟ ଅପୂର୍ବ ରୀତିରେ (ଛଟକରେ) ଆପଣ ବର୍ଣ୍ଣରୂପ ଅଟନ୍ତି ଆନନ୍ଦମୟ ଶୁକ୍ଳ ବର୍ଣ୍ଣର ଫଣି ଯେ ବଳଦେବ

ସେ ହଳ ଯେ ତତ୍ତ୍ୱ ଦୃଷ୍ଟିରୁ ଅ କାର ସ୍ୱରୂପ ଅଟନ୍ତି ଅପୂର୍ବ କର୍ମମୟୀ ସେ ଯୋଗମାୟା ଛଦ୍ମରେ ବା ଗୁପ୍ତ ରୂପରେ ଉକାର ସ୍ୱରୂପା ଯେ ସୌନ୍ଦର୍ଯ୍ୟରେ ପୂର୍ଣ୍ଣ ଓ ତାଙ୍କର ବର୍ଣ୍ଣ ଅରୁଣ ଅଟେ ହେ ପୂର୍ଣ୍ଣ ନୀଳଶୈଳେଶ, ଛଦ୍ମ ଯେ ବିଚିତ୍ର ଢଙ୍ଗରେ ଆପଣଙ୍କର ସ୍ୱରୂପବା ଛାୟା ଯେ ଆକୃତିଗତ ରୂପରେ ସ୍ୱୟଂ ମକାର ର ପ୍ରତିକ ଅଟନ୍ତି ଏ ସମସ୍ତଙ୍କର ସମଷ୍ଟି (ଛନ୍ଦ)ରେ ଓଁକାର ସର୍ବମିତି ଭାବରେ ଛାନ୍ଦସ ଯେ ନିଗମର ସିଦ୍ଧାନ୍ତରେ (ବେଦର) ଛଳରେ ବା ଗୁପ୍ତ ଭାବରେ ଗୋପନୀୟ ସ୍ୱରୂପକୁ ଧାରଣ କରିଅଛ । ★

ଭକ୍ତି ଦେବା ଗୁପ୍ତ ହୋଇଛି ଯୁକ୍ତାକ୍ଷର
ବୈଷ୍ଣବ ବିହୁନେ କେବା ଜାଣିବ ସଂସାର ହେ

ଏହି ବାକ୍ୟରେ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟ ଉପରୋକ୍ତ ଭାବର ସଂକ୍ଷିପ୍ତ ପ୍ରକାଶ ଘଟିଅଛି ।

MSSIରେ ସାମାନ୍ୟ ବ୍ୟତିକ୍ରମଥିବା ମୋ ଦ୍ୱାରା ପୂର୍ବପ୍ରକାଶନରୁ ଜଣାପଡ଼େ ମାତ୍ର ନ୨ ନମ୍ବରର ପାଣ୍ଡୁଲିପିର ପାଠ ସମାନ ଅଟେ । ଭଂଜପ୍ରଭା ୮୩ ଦେଖନ୍ତୁ ।

ଜଗତ ଜଗତରେ ଜୀମୂତ ଭେଦକରେ
ଜାଗ୍ରତ ଜୈନ ଯା ବିମଳ
ଜଗତନାଥ ବୋଲି ଜଗତଯାକ ହୃତ
ଜୈନଙ୍କ ମଧ୍ୟରେ ପ୍ରବଳ
ହେ ନୀଳାଦ୍ରୀଶ
ଜାତ ଅଜାତ ସର୍ବଜନ
ଜଙ୍ଗମ ମାତ୍ରେ ସମଜ୍ଞାନ
ଜଗତ ଜଣାଦ୍ୱେଗ ଜଗଦୀଶ ଜାହ୍ନବ
ଜାଣି ତରନ୍ତି ହୀନ ଜନ ହେ ॥

ହେ ନୀଳାଦ୍ରୀଶ ପତନ ଚୂଡ଼ା ଉପରି ଯେ ଶ୍ରୀବତ୍ସଖଣ୍ଡାଶାଳ ନାମକ ପ୍ରାସାଦ ସେ ଜଗତରେ ଜୈତ ଯେ ବିମଳ ବିଜୟ ଘୋଷଣା କରୁଅଛି ଜଗତରେ ଜଗନ୍ନାଥ ନାମରେ ଆପଣ ବିଷ୍ଣୁମାନଙ୍କ ମଧ୍ୟରେ ପ୍ରସିଦ୍ଧ ଜାତି ଅଜାତି ସମସ୍ତ ଜୀବମାତ୍ର ଆପଣଙ୍କ ଦୃଷ୍ଟ୍ୟରେ ସମାନ । ଜଗତରେ ଆପଣଙ୍କ କୈବଲ୍ୟ (ଭୋଗ) ଜଟଟେଶ୍ୱରଙ୍କର ବିଭବ ରୂପରେ ଖ୍ୟାତ ଆପଣ ଜାତି ଜାତି ହୀନ ଜନରେ ଶ୍ୱପଚ, ପାପୀ ମାନଙ୍କୁ ତ୍ରାଣ କରନ୍ତି ।

ଅପିଚେତ୍ ସୁଦୁରାଚାର

ସାଧୁରେବ ସ ମନ୍ତବ୍ୟ

ଶଢ ଆପଣଠାରେ ହିଁ ପ୍ରମାଣିତ । ଜଗନ୍ନାଥ କେ ଭାତ, ଜଗତ ପସାରେ ହାତ ଆପଣଙ୍କ ଭୋଗର ପ୍ରଶସ୍ତି । ବ୍ରାହ୍ମଣ ଶ୍ରେଷ୍ଠଠାରୁ ଆରମ୍ଭ କରି ଚଣ୍ଡାଳ ବୋଲାଉଥିବା ଜାତି ଆପଣଙ୍କର ସେବକ ଏହାହିଁ ଜଗଦୀଶ ତମର ବିଭବ ଅଟେ ।

ଝର୍ଝରୀକା ଝଟକେ ଝାଡ଼ି କଢ଼ାଇ ଚଟକେ

ଝାଡ଼ଖଣ୍ଡର ଧୂଆଁ ବୋଲି

ଝାଡ଼ୁଧରା ନରେଶ ଝଟ ଦେଖିବ ଆସ

ଝଟକ ଗଜପତି ଠାଣି

ହେ ନୀଳାଦ୍ରୀଶ

ଝରା ଝୁଲିବା ଶୋଭା ଦେଖି

ଝୋବାରେ ନେତ୍ର ଯାଏ ଲାଖି

ଝସକେତନ ଝଟ ଝଣା ଝଣ କବାଟ

ଝଂପାଟକେଦାରୀ ପଣେ ସୁଖୀ ହେ ।

---

ଝର୍ଝରୀକା ଯେ କାଂସ୍ୟବାଦ୍ୟମାନେ ଅତି ଚମତ୍କାର ଭାବରେ ବାଜି ଉଠେ ଜୋରରେ ଆପଣଙ୍କର ପ୍ରାଧାନ୍ୟ ଘୋଷଣା କରେ

( ରଥଯାତ୍ରାର ଘଣ୍ଟମାଦଳ ଦେଖିଥିବା ବ୍ୟକ୍ତି ଜାଣିଥିବେ ) ଆପଣ ଝାଡଖଣ୍ଡ ବା ଜାଙ୍ଗଲୀ ମାନଙ୍କର ଠାକୁର ଏହା ପୁରଣ ପ୍ରସିଦ୍ଧ କବିର କହିଛନ୍ତି "ଝାଡଝଣ୍ଡ ସେ ଅଯେ ବିସ୍ତେ । ହେ ନୀଳାଦ୍ରୀଶ ତୁମର ପ୍ରଦତ୍ତ ବିଭବ ହେତୁ ନରେଶ ଏଠାରେ ଝାଡୁ ଧରି ସେବା କରେ ଓ ଜଗତର ଜନେ ଆସ ଓ ଦେଖ ଏହି ଠାଣି ବା ବିଭବ ପ୍ରଭୁଙ୍କର ଅଟେ । ଏହିଶ୍ରବ ପ୍ରକାଶ କରେ ।

ଆପଣଙ୍କ କପାଳରେ ଝୁଲୁ ଥିବା ଫୁଲଝରର ଶୋଭା ଓ କଟିତଟର ସୁବର୍ଣ୍ଣ ଓଡିଆଣି ଝୋବାଠ ଶୋଭା ଦେଖି କାହାର ନେତ୍ର ଚଞ୍ଚଳ ହେବ ? ଆପଣଙ୍କ ପାଖେ କାମୀଜନର ଟାଣ ରହେନାହିଁ । ଏଥିପାଇଁ ଦ୍ୱାରମାନଙ୍କରେ କାମଜିଣା ଘଣ୍ଟିମାନ ଝନତକାର ଦ୍ୱାର କାମୀମାନଙ୍କୁ ସାବଧାନ କରିଦେଉଛି ଝଂପାଳ ହେ ବାନରାଧୀଶ ଯେ ହନୁମନ୍ତ ସେ ଆପଣଙ୍କର ଦ୍ୱାରପାଳ ରୂପରେ ରହି ସୁଖକୁ ଅନୁଭବ କରନ୍ତି ।।

(ଦ ପଦ ଦ୍ରଷ୍ଟବ୍ୟ)

ଯଙ୍କଙ୍କରୁ ସମ୍ଭୂତ ଯଙ୍କୁପର ଯାଙ୍କିଥ
ଯଙ୍କ ସ୍ୱରୂପ ଯଙ୍କନନ
ଯଙ୍କଙ୍କାଳ ବାହୁକ ଯଙ୍କ ବେଦୀ ନାୟକ
ଅଙ୍କ କ ଭେଦବ ଗହନ ?
ହେ ନୀଳାଦ୍ରୀଶ
ସଙ୍କ କୂଳରେ ହୋଇ ଯାତ
ପ୍ରାଙ୍କ ଚିହ୍ନରେ ଆତଯାତ
ମୁଙ୍କ ମୂର୍ଖ ବନ୍ଧତ ବଙ୍କାନ୍ତରେ ବଙ୍କାତ;
ଯଙ୍କାନ୍ତ ବ୍ରହ୍ମାଣ୍ଡ ବନ୍ଦିତ ହେ ।।

---

ଏହି ପଦରେ 'ଙ୍କ' ଅକ୍ଷରକୁ ଅନ୍ତ୍ୟାକ୍ଷର ରୂପରେ ନେଇ କବି ପୁଙ୍ଗବ ଜଗନ୍ନାଥଙ୍କର ବହୁ ଗୁଢତତ୍ୱକୁ ପ୍ରକାଶ କରିଅଛନ୍ତି । ଜଗନ୍ନାଥ

ମାହାତ୍ମ୍ୟ ଇନ୍ଦ୍ରଦ୍ୟୁମ୍ନ କୃତ ଦଶାଶ୍ୱମେଧ ଯଜ୍ଞାଗ୍ନି ମଧ୍ୟରେ ପ୍ରଥମେ ନିଜର ସ୍ୱରୂପ ଦର୍ଶନ କରାଇଥିଲେ । ତେଣୁ ଜଗନ୍ନାଥ ପ୍ରକୃତରେ ଯଜ୍ଞସମ୍ଭୂତ ଅଟନ୍ତି । ପ୍ରତିକାଳରେ ଯଜ୍ଞାଗ୍ନି ଶ୍ରୀମନ୍ଦିରର ନିତ୍ୟଯଜ୍ଞ ନିମନ୍ତେ ରଖାଯିବାରୁ ସେ ମନ୍ଦିରର ଅବଧାରକ ଏବଂ ପବିତ୍ରତମ ଅଟନ୍ତି । (ଯାଜ୍ଞିଥ) ଯଜ୍ଞ ନାରାୟଣ ରୂପରେ ତାହାଙ୍କର ଯଜ୍ଞରୂପ ନାନା ଶାସ୍ତ୍ରରେ ବିଦିତ । ଗରୁଡସ୍ତମ୍ଭର ଉର୍ଦ୍ଧ୍ୱଦେଶରେ ତାହାଙ୍କ 'ଯଜ୍ଞୋଦ୍ଭବ ବିଗ୍ରହ ଦର୍ଶନୀୟ ଅଟେ । ଜଗନ୍ନାଥଙ୍କ ମୁଖ ବା ଅଧର ସ୍ୱଧା, ସ୍ୱାହା ନାମକ ଦୁଇଟି ଅଗ୍ନିଶିଖାର ପ୍ରତୀକ ଅଟେ । ତେଣୁ ତାଙ୍କର ଆନନ ସେ ମୁଖ ଯଜ୍ଞାଗ୍ନି ପ୍ରାୟ ଅଟେ । ଯଜ୍ଞକୀଳ ବା ଯୁପାକୃତ ଚକ୍ରଧରଙ୍କୁ ସେ ସର୍ବଦା ବାମଭାଗରେ ବହନ କରିଅଛନ୍ତି । ପ୍ରତିବର୍ଷ ଶ୍ରୀଗୁଣ୍ଡିଚା ସମୟରେ ଯଜ୍ଞବେଦୀରେ ବିଜେକରି ଯଜ୍ଞବେଦୀରପ୍ରଭୁ ବୋଲନ୍ତି । ଅହଂଭାବ ବିବର୍ଜିତ କବି କହୁଛନ୍ତି ମୁଁ ଏହିପରେ ଅଜ୍ଞ, ମୁଁ ଆପଣଙ୍କ ଗହନ ତତ୍ତ୍ୱକୁ କିପରି ଭେଦ କରିପାରିବି ? ହେ ନୀଳଶୈଳେଶ ସ୍ୱଜନ୍ମକର୍ମରେ ଜନ୍ମ ହୋଇ, ଜ୍ଞାନିମାନଙ୍କର ସମ୍ପର୍କରେ ଜଡିତ ରହି, ସେମାନଙ୍କ ମୁଖରୁ ପୁଣି ବିଶିଷ୍ଟ ଜ୍ଞାନଗର୍ଭକ ବିଷୟ ମାନଙ୍କରୁ ଜାଣିଅଛି ଯେ ଆପଣଙ୍କର ଅନ୍ନ "ମହାପ୍ରସାଦ" ସୁବିଦିତ ଅଟେ । " ନାସ୍ତି ପୂତତମଦ୍ରବ୍ୟଂ କୈବଲ୍ୟାତ୍ତୁ ଭୂମଣ୍ଡଳେ " ମହାପୁରୁଷ ବିବୃତ୍ତୌ ।

ସର୍ବ ରହସ୍ୟଂ ପୁରୁଷୋତ୍ତମସ୍ୟ ଦେବେ ନ ଜାନାତି କୁତଃ ମନୁଷ୍ୟଃ

ଝାଞ୍ଜ ଝାପଡ଼ ପ୍ରିୟ      ଝାଳ ଝାଳୁଆ ଖାଅ

ଝାଡ ଝଳାଅ ରଙ୍କ ତୋଳା

ଝାଳିଲ ବେଦପଢ      ଝଂଙ୍କ ଧରଙ୍କ ମଢ

ଝାଳୁଆ ଶଉଝାଣ ଭୁଲ

ହେ ନୀଳାଦ୍ରୀଶ

ଟେକିଲେ ଟାକଇ ଟାଣକୁ
ଟେକାଇ ଭକତ ଟାଣକୁ
ଟାଣିବା ଠାଣି ଦେଖି                    କଏ ଯେ ନରମାଣି
ଟାଣିବା ଦ୍ରୁବ ନ କରିବ ହେ ॥

---

ଏହି ପଦରେ ମହାପ୍ରଭୁଙ୍କର ପହଣ୍ଡି ବେଳର ସୁମନ ଚାହିଁଆର ଶୋଭା ବର୍ଣ୍ଣନ କରିବାକୁ ଯାଇ କହିଛନ୍ତି ତାହା ଯେପରି ଚିତ୍ତହାରକ ସେହିପରି ଦମ୍ଭବିନାଶକ ଅଟେ ପହଣ୍ଡିର ଶେଷ ସମୟକୁ ଭକ୍ତଗଣ ତାହାକୁ ନିଃସଂକୋଚରେ ଟାଣିବା ପ୍ରତି ଭକ୍ତଗଣ ଆଗ୍ରହୀ ହୋଇ-ପଡନ୍ତି ଯେପରି କି ଏହି ବଳତ୍କାର କରିବାର ଅଧିକାର ପ୍ରଭୁ ପ୍ରଦାନ କରିଅଛନ୍ତି । ଏହା ଅତି ଉଦାର ଭବର ପ୍ରତୀକ ଅଟେ ।

୧- ଇନ୍ଦ୍ରସ୍ୱାମୀ ନାମକ ଭକ୍ତଙ୍କର ଗୃହରୁ ଟାକୁଆ ନାମକ ଖୁଦକଣିକାରେ ପ୍ରସ୍ତୁତ ପଦାର୍ଥ ମଗାଇ ଭୋଜନ କରିଥିବାର ପ୍ରମାଣ ସ୍ୱରୂପ ଟାକୁଆ ନାମକ ପିଠା ନିତ୍ୟ ଭୋଗ ଲାଗେ ।

୨- ସ୍କନ୍ଦପୁରାଣ ଅଭିମତରେ ବେଦପତି ବ୍ରହ୍ମା ଯାହାଙ୍କର ପ୍ରାସାଦ ପ୍ରତିଷ୍ଠା ସମ୍ବନ୍ଧରେ ପୁରୁଷୋତ୍ତମ କ୍ଷେତ୍ରରେ ପଦାର୍ପଣ କରିଥିଲେ ଓ ବ୍ରହ୍ମଗିରି ନାମକ ସ୍ଥାନରେ ତାଙ୍କର ଆଗମନର ସ୍ମୃତି ଓ ନୃସିଂହ-ନାଥଙ୍କର ଦ୍ୱାରଦେଶରେ ବ୍ରହ୍ମାଙ୍କର ସ୍ୱତନ୍ତ୍ର ବିଗ୍ରହ ଅଛନ୍ତି ।

୩- ଯୋଗେଶ୍ୱର ଶିବ ମହାପ୍ରସାଦର ମହିମା ବଢାଇବା ନିମନ୍ତେ ନିତ୍ୟ କୈବଲ୍ୟପସର ପରସିଥାନ୍ତି । ସ୍କନ୍ଦପୁରାଣରେ ଏହା ଶିବରକ୍ଷିତ କ୍ଷେତ୍ର ଭାବରେ ବିଦିତ ।

ଠଣ ସୁନ୍ଦର ଠାର    ଠକାର ନସୁନର
ଠକେ ନ ପାରନ୍ତ ତା ବାର
ଠଣାକୁ ଆଶ୍ରା କରି    ଠାଆ ବେଳ ଆଦରି
ଠିଆରେ ଦେଲ୍ ନେଇ ଠାରି
ହେ ନୀଳାଦ୍ରୀଶ
ଠକାର ଚରଣ ଟଳିଲା
ଠିକରେ ଠାଣି ଢଳିଗଲା
ଠକ ନୁହ ଆପଣ    ଠିକ ଠାକୁର ପଣ
ଠିକ ଏ ଶରଣ ଭଜିଲି ହେ ॥

---

ଉକ୍ତ ପଦ ଏକ ଉଚ୍ଚକୋଟିର ଦର୍ଶନାନନ୍ଦର ପ୍ରତୀକ । ଅତ୍ୟନ୍ତ ଆକର୍ଷଣୀୟ ଗୋଲ ନେତ୍ର ଯାହାର ଶକ୍ତି ଠକ ବା ଅନୁତ୍ତମ ବ୍ୟକ୍ତି ବାରିପାରନ୍ତି ନାହିଁ । ସେହି ଠଣା ବା ଆଶ୍ରୟକୁ ଅବଲମ୍ବନକରି ଭୋଗ (ଠାଆ) ବେଳେ ଦେଖୁଥିଲି ବେଳେ ଆଖି ଠାରିଦେଲ ବା କୃପା କଟାକ୍ଷ ପ୍ରଦାନ କଲ । ଆପଣଙ୍କର ବର୍ତ୍ତୁଳାକାର ପାଦ ଟଳିଗଲା ପ୍ରାୟ ମୋତେ ଠିକ ଭାବରେ ଦୃଶ୍ୟ ହେଲା । ହେ ନୀଳାଦ୍ରୀଶ ଆପଣ ଭକ୍ତ ଜନଙ୍କ ପାଇଁ ଠକ ନୁହନ୍ତି ସଚ୍ଚା ପ୍ରଭୁପଣ ଜାଣି ମୁଁ (ଏ) ଶରଣ ପଶୁଅଛି । ଜଗନ୍ନାଥଙ୍କର ଭକ୍ତମାନେ ତାଙ୍କର ଇଙ୍ଗୀରେ ଇଙ୍ଗିତ ପାଇଥାନ୍ତି ଏହା ଏକ ଅନୁଭବ ସିଦ୍ଧାନ୍ତ, ଭକ୍ତ ପଦରେ ଭଞ୍ଜକବିଙ୍କୁ ଶରଣାଗତ କରିଅଛି ଆତ୍ମୀୟ ରଚନା ।

ଡିଣ୍ଡିମ ବଜାଇ କହୁଛି    ଡବର ପଣ ଡରେ ଘୋଷି
ଡାମରେ ଡାକହାକ ଜାଣି
ଡମ୍ବରୁ ବଜେ କାଳ    ଡାକ ମହିମା ଗୀର
ଡେର ଯେ କର୍ଣ୍ଣେ ଅଛି ଶୁଣି
ହେ ନୀଳାଦ୍ରୀଶ

ଡ଼ମ ଡାକୁଂଛି ବାଦ୍ୟ ଘୋଷ
ଡଙ୍ଗର ଗଡ଼ଙ୍କ ହରଷ
ଡରେ ନୟନେ ବାରି ଡୋରି ଲଗାଅ ବୋଲି
ଡାକ ମୁଁ ଶରଣ ମାନସ ହେ ॥

---

ଭକ୍ତକବି ଉଦଘୋଷଣର ସହିତ କହୁଛନ୍ତି ସଂକୋଚରେ ଡଗରୀଆ ପ୍ରାୟ ଆପଣଙ୍କର ପ୍ରଶସ୍ତି ଡାମର ତନ୍ତ୍ର ଯାମଳାଦିରେ ବିସ୍ତୃତ ବିବୃତ । ଆପଣଙ୍କର ଦୈନନ୍ଦିନ ବେଶ ନୀତି ବା ପହୁଡ଼ ବନ୍ଦାପନା କାଳରେ ଡମ୍ବୁର ବିଜୟ ବେଳର ମହିମା ଡାକ ଯେ ଶୁଣିଛି, ଯାହା କାନରେ ମର୍ଦ୍ଦଳ କାଂସ୍ୟତାଳାଦି ସମେତ ଶୟନୀ କୀର୍ତ୍ତନ ବାଜିଛି ଯେ ଅନୁରତି ଭବୋମୁଖୀ ମାତ୍ର ଆଶଙ୍କାରେ ଆପଣଙ୍କୁ ଭକ୍ତି ଦ୍ୱାରା ଅନୁରୋଧ କରୁଛି ଟିକେ ଡୋରି ଲଗାଇଦିଅ । ପ୍ରଭୁ ମୁଁ ଶରଣ ପାଇଁ ଚରଣ ତଳକୁ ଯାଏ ।

ଡଗ ଡ଼ମାଳମାନ ଡ଼ଙ୍ଗରେ ଗାଇ ଜନ
ଡର ଦେଖାଇ ଡ଼କୁଥାନ୍ତି
ଡଳ ଡଳ ନୟନେ ଡେ଼ଗା ମାଳଆ ଗଣେ
ଡେଗା କଣ୍ଠିକୁ ବିଲୋକନ୍ତି ହେ
ହେ ନୀଳାଦ୍ରୀଶ
ଡମକୁ ବରଜନ୍ତି ହେଲେ
ଡ଼ାଳେ ଶୁଣିବା ପୁଣ୍ୟବଳେ
ଡକା ପିଟିଣ ବାଇ ଡୋଳଗଲେଣ ରହି
ଆଡ଼କେ ଭଧି ବଖାଣନ୍ତି ॥

---

ପୁରୁଷୋତ୍ତମ କ୍ଷେତ୍ରବାସୀଗଣ ଅଭୟ ଚରଣାରବିନ୍ଦତଳେ ଥାଇ ନିଜକୁ ଧନ୍ୟ ମନେକରି ନାନା ଲୌକୀକ ଭକ୍ତି ବ୍ୟବହାର କରି ନିଜର ବାହାଦୁର ପଣ ଦେଖାଇଥାନ୍ତି । ଏହି ସାତ୍ୱିକ ଅହଂକାରିଗଣ ତଥା ମୋଟା ତୁଳସିମାଳା କଣ୍ଠରେ ଧାରଣ କରି ବା ବୈଷ୍ଣବ ଗଣ ଅତ୍ୟନ୍ତ ଆଗ୍ରହରେ ସୁବର୍ଣ୍ଣ ନିର୍ମିତ ହେଗା ବା ହରିତାମାଳାର ଶୋଭା ଦେଖୁଥାନ୍ତି ଓ ଏହାର ଫଳ ସ୍ୱରୂପ ଅହଂଭାବ ତ୍ୟାଗକରି ପୁଣ୍ୟ ଅର୍ଜନ କରିଥାନ୍ତି । ଏହିପରି ପ୍ରଭୁଙ୍କ ମହୀମା "ଗାଥା" ତତାଉ ଜରଣମାନେ ଆଜକ ପ୍ରମାଣ ବା ଲଗ୍ନ ତିଥି ଅନୁସାରେ ଶ୍ରୀମନ୍ଦିରର ବିଧି ବିଧାନ କହନ୍ତି ଓ ବୁଲାଇଥାନ୍ତି ।

ଅଣାକାର ସ୍ୱରୂପ ! ଅଣ ଅକ୍ଷର ରୂପ
ଅଣବର୍ଣ୍ଣରେ ପ୍ରକାଶିଲ
ଅଣସରରେ ଥାଇ ଶବର ଭାବ ଧ୍ୟାନ୍ତି
ଅଣବେଦକୁ ଆଦରିଲ
ହେ ନୀଳାଦ୍ରୀଶ
ଅଣକୁଲୀଅଗଣେ ପ୍ରିତ
ଅଣସଜନଙ୍କର ହିତ
ଅଣ ଭକ୍ଷ୍ୟ ପ୍ରବଳ ଅଣାସ୍ୱାଦ ବହଳ
ଅଣ ଉକ୍ତରେ ନ ଗମନ୍ତ ହେ ।।

---

ପ୍ରଭୁ ଆପଣଙ୍କର ଆକାର ଥିଲେ ମଧ୍ୟ ନିରାକାରତ୍ୱର ପ୍ରତୀକରୂପେ ଅଜପା ମନ୍ତ୍ର ଓଁକାର ରୂପେ ପ୍ରତିଷ୍ଠିତ । ବିଶ୍ୱାବସୁ ଶବର ଯେ କି ଅନ୍ତ୍ୟଜ ଅଟେ ତାହାଙ୍କ ଦ୍ୱାରା ଆପଣ ପ୍ରକାଶମାନ ହୋଇଅଛ । ଅନବସର (ଜ୍ୟେଷ୍ଠ ପୂର୍ଣ୍ଣିମାରୁ ଆଷାଢ ଅମାବାସ୍ୟା ପର୍ଯ୍ୟନ୍ତ କାଳ) ରେ ଶବର ପୂଜନ ବା ମୌଳିକ ଭାବମୟ ଉପାସନାକୁ ଉଦ୍ଧାର

ଗ୍ରହଣ କରିଛ ଯାହାକି ଶାସ୍ତ୍ରୀୟ ବୋଲି ବେଦୋକ୍ତବାମାନେ କହନ୍ତି ହେ ନୀଳାଦ୍ରୀଶ ଯେଉଁମାନଙ୍କର କୂଳମହତ ନାହିଁ ଅର୍ଥାତ ହେଉ, ବାଉରି ଓ ପାଣ ପ୍ରଭୃତିଙ୍କର ସେବା ଗ୍ରହଣ କର । ପୁଣି ସମସ୍ତଙ୍କ ହାତରେ ପଥ ଉପରେ ଭୋଜନ ଗ୍ରହଣ କରି ଅନ୍ତ୍ୟଜ ଜନଙ୍କର ରୀତିକୁ ଆଚରଣରେ ଦେଖାଅ ତମର ରଥରେ ଅଶ୍ଳୀଳ ଭାଷା ପ୍ରବଳ ବେଗରେ ଗାୟନ କରଯାଏ । ଯେଉଁମାନେ ଭକ୍ତ ନୁହନ୍ତି ଅର୍ଥାତ ତୁଳସିମାଳାର ମହତ୍ୱ ନଜାଣନ୍ତି ସେ ଅଣଭକତଗଣ ଏହି ଗଭୀର ରହସ୍ୟକୁ ଭେଦ କରିପାରନ୍ତି ନାହିଁ । ଆପଣ ଙ୍କଛତା ପୃଥିବୀ ତଥା ଭାରତରେ ଏପରି ସାର୍ବଜନୀନ ବିଗ୍ରହ ଅନ୍ୟତ୍ର ଦେଖାଯାଏ ନାହିଁ । ଉକ୍ତ ପଦରେ କବି ସମ୍ରାଟ ଏହା ସୂଚାଇଅଛନ୍ତି ।

ତାପତ୍ରୟ ତାରକ ସ୍ୱାଣପଣ ତଳକ
ତୁଙ୍ଗରେ ତୁଯ୍ୟୂ ପ୍ରକଟ
ନିଧାତଭୃ ସ୍ୱଦତ ତସ୍ୱଟ ତନୂଖ୍ୟାତ
ତୋରଣେ ସ୍ୱସରସ ହାଟ
ହେ ନୀଳାଦ୍ରୀଶ
ତୁଳନା ତନ ତଳେ କାହିଁ ?
ତୁମ୍ଭ ଚରିତ ତୁମ୍ଭେ ହେଇ
ତୀର୍ଥେ ଖ୍ୟାତ ଆପଣ ତଟସ୍ଥେ କର ସ୍ୱାଣ
ତ୍ୟକ୍ତ ତୁଳସିଦଳ ଦେଇ ହେ ॥

---

ପ୍ରଭୁ ଆଧିଭୌତୀକ, ଆଦିଦୈବୀକ, ଆଧ୍ୟାତ୍ମିକ ତାପମାନଙ୍କର ବିନାଶକ ଓ ତ୍ରାଣ କରିବାରେ ଆପଣ ଶ୍ରେଷ୍ଠ, ଆପଣଙ୍କର ଉର୍ଦ୍ଧ୍ୱ ବା ଶିଖର ଦେଶରେ ତୁରୀୟାବସ୍ଥାର ସୂଚକ ନାଦବିନ୍ଦୁ ପରିଶୋଭିତ । ଆତ୍ମତତ୍ତ୍ୱ, ବିଦ୍ୟାତତ୍ତ୍ୱ, ପରତତ୍ତ୍ୱର ପ୍ରତୀକ ରୂପରେ "କ୍ଷରାକ୍ଷରୋତ୍ତମ" ସ୍ତବରେ ଆପଣ ଖ୍ୟାତ ବିଗ୍ରହ ଅଟନ୍ତି । ଆପଣଙ୍କର ବିମାନ ଓ ମୁଖ-ଶାଳାର ମହତି ତୋରଣରେ ରମଣୀୟ କେଳିବନ୍ଧର ସମୂହ ବିସ୍ତରିତ

ରହି ଆପଣଙ୍କୁ ରସସପେଶ୍ବର ବୋଲି ପ୍ରମାଣ କରୁଅଛି । ତ୍ରିଲୋକରେ ଆପଣଙ୍କର ସମକକ୍ଷ ପ୍ରଭୁ କେହି ନାହାନ୍ତି । ତେଣୁ ଆପଣହିଁ କେବଳ ଆପଣଙ୍କ ପରି ଅଟନ୍ତି । ଆପଣ ସ୍ୱୟଂ ପଞ୍ଚତୀର୍ଥ ମଧ୍ୟରେ ବିଗ୍ରହ ନୁହନ୍ତି । ସାକ୍ଷାତ ତୀର୍ଥ ଭାବରେ ଶାସ୍ତ୍ରଣିଦ୍ଧ ।

" ମାର୍କଣ୍ଡେୟ ଅବଟ କୃଷ୍ଣ, ରୋହିଣେୟ ମହୋଦଧି, ଇନ୍ଦ୍ରଦ୍ୟୁମ୍ନ " ମଧ୍ୟରୁ ଢର୍ଯୋଦେବ ତ୍ରୟତୀର୍ଥଃନ୍ୟାୟରେ ଅପଣତ୍ରାଣକାରି ଆପଣଙ୍କ ଶ୍ରୀଚରଣ ତୁଳସୀ ଦ୍ୱାରା ଏହି ସମୁଦ୍ଧରଣ କୃତ୍ୟ ସମ୍ଭବ ହୋଇଥାଏ ।

ଥରେ ପଥରେ ଥାଇ ଥଳ କମଳ ଗନ୍ଧି
ଥରଇ ପଥର ମରମ
ଥଳଥଳ ନୟନ ଥରଇ ଅପଧନ
ଥୋପରେ ଥାପିଣ ବଦନ
ହେ ନୀଳାଦ୍ରୀଶ
ଥକ୍କନ ମନ ଥକଇ ସେ
ଥରକେ ପ୍ରଭୁପଣ କପେ
ଥପୁକର ପ୍ରମାଣି; ଥଳ ମୋକ୍ଷଦ ପାଣି
ଥମ୍ଭରେ କଙ୍କର ବନ୍ଧାସେ ॥

---

କେବେ କଦବା ପଥରେ ଆପଣଙ୍କ ବିଶ୍ୱବିଖ୍ୟାତ ଦିବ୍ୟପଦ୍ମ-ନେତ୍ରଙ୍କୁ ଅବଲୋକନ କରି ଅତି ଦାରୁଣ ହୃଦୟ ମଧ୍ୟ କମିଯାଏ । ଢଳଢଳ ଭାବପୂର୍ଣ୍ଣ ନେତ୍ରକୁ ନିରୀକ୍ଷଣକଲେ କାୟମନ ଥରିଯାଏ । ମନ (ଥୋପ) ଫୁଲନଷ୍ଟା ତିଳକରେ ଝଟତି ସ୍ଥିର ହୋଇଯାଏ । ଇତସ୍ତତଃ ମନ ଘୂଲି ଦିବ୍ୟ ସ୍ଥରକୁ ଆସିଯାଏ ଓ ଥରକେ ପ୍ରଭୁ ପଣକୁ ଅନ୍ତରେ ମାନିଯାଏ । ନିଶ୍ଚୟ କରି ବିଗ୍ରହ ସ୍ଥିର ଭାବେ ମୋକ୍ଷପ୍ରଦ ସ୍ଥଳକୁ ଅବଗତ ହୋଇ ନିଶ୍ଚିତ ଦାଶତ୍ୱରେ ପ୍ରତ୍ୟୟୀ ହୁଏ ।

ଦକ୍ଷିଣ ସିନ୍ଧୁ କୂଳେ ଦଶମୂର୍ତ୍ତି ବଟରେ
ଦମ୍ଭୀଙ୍କ ଦର୍ପ ନାଶ କର
ଦଣ୍ଡପାଣିର ପାଣି ଦ୍ରବଣ ବୋଲି ଜାଣି
ଦର୍ପରେ ଥାନ୍ତି ଯେ କିଙ୍କର
ହେ ନୀଳାଦ୍ରୀଶ
ଦମନ କଲ କାମ ଠାଣି
ଦମନକରେ ପ୍ରୀତି ଆଣି
ଦଳ ସୁର ଦ୍ୱାରକ ଦୟଣା ଦଳ ଯାକ
ଦର୍ଶାଇ ମଣ୍ଡିଣ ଛନ୍ଦଣି ॥

---

ଆପଣ ଦକ୍ଷିଣ ସାଗରର କୂଳର ନୀଳାଚଳ ନାମକ ଗୁହାରେ ଦମ୍ଭୀଜନମାନଙ୍କର ପାପକୁ ନାଶକର, ଦଣ୍ଡପାଣିଯେ ଯମରାଜ ତାଙ୍କର ହସ୍ତସ୍ଥିତ କ୍ଷମତା ପୁରୁଷୋତ୍ତମରେ ଶିଥିଳ ଜାଣି ତୁମର ସେବକଗଣ ସବୁବେଳେ ଦର୍ପିଷ୍ଠ ଭାବରେ ରହନ୍ତି ହେ ନିଳାଦ୍ରୀଶ ତୁମେ ମକରଧ୍ୱଜ କାମଦେବଙ୍କର ଦର୍ପ ବା ଉଦ୍ୟମକୁ ପଣ୍ଡକରି ଦମନକ ( ଦୟଣା ) ବୃକ୍ଷରେ ପ୍ରୀତି ହେବାରୁ ଦେବତାମାନଙ୍କର ଅଳକବାଟିକା ତୁଚ୍ଛକରି ଦେବଦ୍ୱାରୀକୁ ପରାହତକରି ମନମୁଗ୍ଧକର ସୁଗନ୍ଧିଯୁକ୍ତ ଦୟଣା କଳିକା ଯୁକ୍ତ ପତ୍ରରେ ମଣ୍ଡିତ ହୋଇ ସୁନ୍ଦର ଦେଖାଯାଅ । (ଚୈତ୍ରମାସ ଶୁକ୍ଳ ଚତୁର୍ଦ୍ଦଶୀ ଦିନ ଦମନକ ଚତୁର୍ଦ୍ଦଶୀ ଯାତ୍ରାରେ ଏହି ଲୀଳା ଅନୁଷ୍ଠିତ ହୁଏ ଓ ସେହିଦିନ ପ୍ରଭୁ ପ୍ରୋକ୍ତ ସୁଗନ୍ଧିଯୁକ୍ତ ପତ୍ର ଧାରଣରେ ଅତି ମନୋରମ ଦେଖାଯାନ୍ତି । )

ଧରଣୀ ଧରାନୁଜ ଧରାତଳେ ତୋ ଧ୍ୱଜ
ଧରନ୍ତି ଧୀର ଜନ ଜ୍ୟୋତି
ଧୂଳି ଚରଣ ଜନେ ଧଣ୍ଡାମାଳିଆ ଧାନେ
ଧାଇଁବା ପିତା ବରଜନ୍ତି
ହେ ନୀଳାଦ୍ରୀଶ

ଧନ ଜଗିଆ ଶିବାଧବ (୧)
ଧର୍ମଧାତ୍ରୁଙ୍କୁ ବନ୍ଦେ୍ାଳବ
ଧାଡ଼ ଲଗାଇ ଧସି ଧୋକଡ଼ି ଘରେର ପଶି (୨)
ଧନ୍ୟମଣନ୍ତି ଧୀର ଜନ ॥

---

ଆପଣ ଧରଣୀକୁ ଧାରଣ କରିଥିବା ଅନନ୍ତଙ୍କର ଅନ୍ତ ଆପଣଙ୍କର ଧ୍ୱଜ ଧୀରଜନ ବା ଯୋଗୀମାନଂକର ଅନୁଭବ ଜ୍ୟୋତି ସ୍ୱରୂପ ଚଂଦ୍ର ସୂର୍ଯ୍ୟ ଚିହ୍ନକୁ ଧାରଣ କରିଅଛି । ପଥରେ ଏ୍ୱଳିଆସୁଥିବା ଧୂଳିଧୂସରିତ ପାଦ ବିଶକ୍ଷ ଭକ୍ତଗଣ ବାରଦ୍ୱାର ଧଣ୍ଡା ପୈଠୁଥିବା ଆପଣଙ୍କୁ ଧ୍ୟାନକରି ଧାଇଁବା କଷ୍ଟ ଭୁଲିଯାନ୍ତି । ଆପଣଂକର ଭଣ୍ଡାର ରକ୍ଷକ ଲୋକନାଥ ଅଟନ୍ତି । ଆପଣ ଧର୍ମ ଧାରଣାର ମୂଳ, ଆପଣଙ୍କୁ ଦର୍ଶନପାଇଁ ଧାଡି ଲଗାଇ ଧସିକରି ପଶନ୍ତି ଧୋକଡ଼ି ନାମକ ଦ୍ୱାରଦେଇ ଗମନ କରି ଧୀର ଜନମାନେ ଆପଣାକୁ ଧନ୍ୟ ମଣନ୍ତି ବା ଶ୍ରେଷ୍ଠ ମନେକରନ୍ତି ।

୧- ପୁରୀର ପ୍ରସିଦ୍ଧ ଶୈବପୀଠର ଲୋକନାଥ ଶିବ ଜଗନ୍ନାଥ ମନ୍ଦିରର ଭଣ୍ଡାର ରକ୍ଷକ ରୂପେ ମୁଖଶାଳାରେ ବିଜେମାନ କରିଥାଆନ୍ତି ।

୨- ମୁଖଶାଳାରୁ ଶ୍ରୀ ବିଗ୍ରହଙ୍କ ନିକଟକୁ ପ୍ରବେଶ କରିବାର ଦ୍ୱାରର ନାମ ଧୋକଡି ଦ୍ୱାର । ସେ ବାଟଦେଇ ବିଶିଷ୍ଟ କବି, ପଣ୍ଡିତ, ସନ୍ଥ ମହନ୍ତମାନେ ଦର୍ଶନକୁ ଯାଆନ୍ତି । ଭଞ୍ଜ ବୀରବରଙ୍କୁ ସେହିବାଟେ ଯିବାର ଆଦେଶ ମିଳିଥିବା ଦୃଷ୍ଟିରୁ ସେ ସମ୍ଭବତଃ ଏପରି ଏକ ଦ୍ୱାରର ବିଶେଷତା ପ୍ରକାଶ କରି ଅଛନ୍ତି । ଏହା ସାଧାରଣ ଯାତ୍ରୀ ଜାଣନ୍ତି ନାହିଁ ।

ନନ୍ଦାବରତେ ଥାଇ      ନସ୍ପୃନ ନରେଖର
ନନ୍ଦନନ୍ଦନ ତିନି ବର୍ଣ୍ଣ
ନକ୍ଷତ୍ର ଚନ୍ଦ୍ରାତପ      ନବଗ୍ରହ ପ୍ରଦୀପ
ନଳଗ୍ନେ [ନରତ] ନରକ ନାଶନ୍ତି
ହେ ନୀଳାଦ୍ରୀଶ
ନିତ୍ୟ ନବୀନ ତନୁଧାରୀ
ନୀଳାଦ୍ରୀ କନ୍ଦର କେଶରୀ
ନଖ ନ ଥାଇ ହରି      ନରଅଘ ବିଦାରି
ନବ ଭକତି ଦିଅ ଭରି ।

---

ଦର୍ଶନକୁ ଗଲାବେଳେ ନନ୍ଦାବର୍ତ୍ତ ଉପରେ ଉପସ୍ଥିତ ହେଲେ । ନନ୍ଦନନ୍ଦନ ହଳାୟୁଧ, ବିଦ୍ୟୁତକନ୍ୟା ସୁଭଦ୍ରା ଓ ସାକ୍ଷାତ କୃଷ୍ଣଙ୍କର ଶୁକ୍ଳ, ଅରୁଣ ଓ କୃଷ୍ଣ ବର୍ଣ୍ଣର ବିଗ୍ରହ ଦୃଷ୍ଟି ପଥାରୁଢ଼ ହୋଇଥାଏ । ଯେଉଁଠାରେ ନକ୍ଷତ୍ରମାନେ ଚନ୍ଦ୍ରାତପ ରୂପରେ ବିରାଜମାନ କରନ୍ତି ଓ ନବଗ୍ରହମାନେ ପ୍ରଦୀପ ଭାବରେ ଆଲୋକ ବିକିରଣ କରୁଅଛନ୍ତି । ସେ ଚିନ୍ତାମଣି ଗୃହନରକ ଚିନ୍ତା ନାଶକରେ । ହେ ନୀଳାଦ୍ରୀଶ ଆପଣଙ୍କର ଶୋଭା ପ୍ରତିକ୍ଷଣରେ ପରିବର୍ତ୍ତନ ହେଉଥାଏ । ଆପଣ ନିଳାଦ୍ରୀ କନ୍ଦରର ମହାନ ସିଂହ ଅଟ । ନଖ ନ ଥିଲେ ମଧ୍ୟ ନରସିଂହ ନଖଦ୍ୱାରା ହିରଣ୍ୟକଶିପୁଙ୍କୁ ବିଦାରଣ କଲା ପ୍ରାୟ ଆପଣ ନରଲୋକର ପାପମାନଙ୍କୁ ବିଦାରଣ କରୁଛନ୍ତି ଓ ନବଧା ଭକ୍ତିର ଫଳକୁ ଅକାତରେ ପ୍ରଦାନ କରୁଅଛନ୍ତି ।

୧- ମନ୍ଦିରର ପ୍ରବେଶ ପଥର ୨ଗୋଟି ସୋପାନର ନାମ ନନ୍ଦାବର୍ତ୍ତ ।

୨- ଶ୍ରୀ ଜଗନ୍ନାଥଙ୍କ ତ୍ରିମୂର୍ତ୍ତି ବା ରତ୍ନସିଂହାସନ ଉପରେ ଦିଆଯାଇଥିବା ଚାନ୍ଦୁଆ ଯାହାକି ବଡ ଓଡିଆ ମଠ ପକ୍ଷରୁ ଲାଗି ହୁଏ । ସେଥିରେ ୨୭

ଗୋଟି ଉଜ୍ଜ୍ୱଳ ରଙ୍ଗତା ଦ୍ୱାରା ନକ୍ଷତ୍ର ପୁଞ୍ଜ ଚିତ୍ରିତ ହୁଏ ତାହାର ନାମ ମଧ୍ୟ ନକ୍ଷତ୍ରବୃନ୍ଦୁଆ ଅଟେ । 'ଶୋଭେ ନକ୍ଷତ୍ର ଚନ୍ଦ୍ରାତପ ହେ ମହାପ୍ରଭୁ'

୩- ଜଗନ୍ନାଥଙ୍କର ରତ୍ନ ସିଂହାସନ ନିକଟରେ ୯ ଗୋଟି ବଇଠା ବା ଦୀପ ଅଖଣ୍ଡ ନିକାପମାନେ ଜାଳନ୍ତି । ତାହାର କ୍ରମଭାବରେ ବାମରେ ୫ ଓ ଦକ୍ଷିଣରେ ୪ ଗୋଟି ପ୍ରଦୀପ ଜଳେ । ନବଗ୍ରହ ବଇଠା ତାର ଅନ୍ୟନାମ ଅଟେ ।

ପଙ୍କ ପ୍ରପଞ୍ଚେ ପଡ଼ି          ପକ୍ଷକେ ପଥ ଦୃଢ଼
ପଦ ପାଞ୍ଜି ପ୍ରମାଣ କଲି
ପଣ୍ଡିତ ପୋଡି ଦେଇ          ପତାକା ପଣେ ଦେଇ
ପଣ୍ଡିତ ଜନ ପଣ ନେଲି
ହେ ନୀଳାଦ୍ରୀଶ
ପଦପଙ୍କଜ ପ୍ରାନ୍ତେ ପଡ଼ି
ପଙ୍କିଳ ପଥ ପରିହରି
[୧] ପରା ବିଦ୍ୟା ପ୍ରଭାବେ          ପୁରୁଷୋତ୍ତମେ ସେବେ
ପୁରୁଷ ପଣ ପରଶିଲି ହେ ॥

---

ଏହି ପଦ ଶ୍ରୀଭଗବତ ଚରଣାର ବିନ୍ଦରେ ପୁରୁଷାର୍ଥ ସମର୍ପଣର ଏକ ରମଣୀୟ ଅଭିବ୍ୟକ୍ତି । ଭକ୍ତ କବିବର କହୁଛନ୍ତି ସଂସାର ପଙ୍କ ଓ ପ୍ରପଞ୍ଚରେ ଏକପଟିଆ ହୋଇପଡି କେବଳ କାବ୍ୟ, କବିତା ଲେଖିବାରେ ବ୍ରତୀ ହୋଇଥିଲି । ଏବେ ଆପଣଙ୍କ ପତିତପାବନ ଧ୍ୱଜାର ନିର୍ଭର ଉପରେ ନିର୍ଭର କରି ପାଣ୍ଡିତ୍ୟ ରୂପକ ପ୍ରୌଢ଼ି ତ୍ୟାଗ କରି ଅତି ଅକିଞ୍ଚନ ପ୍ରାୟ ପାଦପଦ୍ମକୁ ଆଶ୍ରୟ କରି ସଂସାରର ଖପତା ପଟ ତ୍ୟାଗ କରି ପରାବିଦ୍ୟା ବା ବ୍ରହ୍ମବାଦର ସୁ ରସର ପ୍ରଭାବରେ ପୁରୁଷୋତ୍ତମ କ୍ଷେତ୍ରରେ ଭାଗ୍ୟ ସହିତ ସମୁଦାୟ ସମର୍ପଣ କରୁଛି । ଭକ୍ତ ଭକ୍ତ ଉତ୍ତମ କରି ଜାଣିଥିଲେ ଯେ ଜଗନ୍ନାଥ ପ୍ରେମମୟ ବିଗ୍ରହ ହେତୁରୁ ସେଠାରେ

ପୁରୁଷ ସେବାର ପ୍ରଚଳନ ନାହିଁ । ମନ୍ତ୍ର ସେବକଙ୍କ ହେତୁରେ ନିଜକୁ ଓ ଜଗତକୁ ସ୍ତ୍ରୀ ଓ କେବଳ ପୁରୁଷୋତ୍ତମ ଜଗଦୀଶ୍ୱରଙ୍କୁ ପୁରୁଷ ବୋଲି ମନେକରନ୍ତି ।

ସ୍ତ୍ରୀ ରୂପଂ ହି ଜଗତ ସର୍ବଂ ପୁରୁଷ ପୁରୁଷୋତ୍ତମଃ
ଜ୍ଞାତି ଇତ୍ଥା ସେବୟାତ୍ମା ଅନ୍ତଂତ୍ର ପରିବର୍ଦ୍ଧୟେ (ଅମୃତ ଚିନ୍ତାମଣି)

୯- ପର୍ ପର୍ ବିଦ୍ୟା ନାମରେ ବିଦ୍ୟା କି ପ୍ରକାର

ଯାହା ଈଶ୍ୱର ପ୍ରାପ୍ତିର ସହାୟକ ତାହା ପର ଓ ଜାଗତୀକ ଦାୟକ ସମସ୍ତ ବିଦ୍ୟା ଅପର ବିଦ୍ୟା ଅଟେ ।

**ଫଣିପତି ସ୍ତାବକ** — ଫଣୀ ଫଣା ମର୍ଦ୍ଦକ
ଫର୍ଫରିକକୁ ତେଜ୍ୟ କରି
ଫଳ ନଥିବା ତରୁ — ଫଳଦ ମହାମେରୁ
୧) ଫଲଗୁ ଛଳ ଫନ୍ଦ ଧରି
ହେ ନୀଳାଦ୍ରୀଶ
ଫର ଫରିଆ ବାନାମ୍ବରେ
ଫଟ୍‌କାର ପୂଜାକ ଆଚରେ ?
୨) ଫୁଲ କୂଳଙ୍କୁ ଧରି — ଫିସାଦ ଅନୁସରି
ଫନ୍ଦ ଫାନ୍ଦଛ ଫେରବାର ॥

---

ହେ ନୀଳାଦ୍ରୀଶ ଆପଣ ମୁଖ୍ୟ ହେଲେ ମଧ୍ୟ ଫଣିପତି ବଳ-ଦେବଙ୍କର ସ୍ତାବକ ହୋଇଅଛ କନିଷ୍ଠ ରୂପରେ । ହେ କାଳୀୟ ମର୍ଦ୍ଦନ କାରୀ (ଫର୍ଫରିକ) ହାତ ପାପୁଲିକୁ ତ୍ୟାଗ କରିଛ । ଏହାର ଅର୍ଥ ଆପଣ ସୀତାଙ୍କ ଫଳ ନ ଦେବା ବୃକ୍ଷ ଅଟନ୍ତି । କିନ୍ତୁ ମହତ ବିଗ୍ରହ କାରଣରୁ ମୋକ୍ଷ ଦେଇ ପାରନ୍ତି । ତେଣୁ ଫଲ୍‌ଗୁ ବା ମହାମେରୁ ବୋଲନ୍ତି ।

ହେ ପ୍ରଭୁ ଆପଣଙ୍କର ବାନା ବା ଧ୍ୱଜା ଗଗନ ମାର୍ଗରେ ଫଟ୍ ଫଟ୍ ଶବ୍ଦ ଦ୍ୱାରା ଫଟକାର ମନ୍ତ୍ରଯୁକ୍ତ ପୂଜନ କରୁଅଛି ? ଅତଏବ ସ୍ୱଜନମାନଙ୍କୁ ନେଇ ଏକ ଛଳନାମୟ ରୀତିରେ ଏକ ମାୟାମୟ ପଦ୍ଧତି ବା ତନ୍ତ୍ର ସୃଷ୍ଟି କରିଛ । ମାତ୍ର ଆପଣ ଯେ ଦୁଷ୍ଟଦଳନ ନିମନ୍ତେ ଏହିଭଳି ହୋଇଅଛ । ଏହା ଜଣାଯାଏ ।

ବ୍ରହ୍ମ ବୋଲି ବ୍ରହ୍ମଜ୍ଞେ          ବୋଲନ୍ତ ସ୍ତବେ ଭକ୍ତେ
ବୁଧେ ବୋଲନ୍ତ ବୁଦ୍ଧ ବୋଲି
ବୁଦ୍ଧିରେ ବିଚାରଇ          ବଳକ୍ଷାବଳି ଗୁହିଁ
ବାହୁକ ବନ୍ଧୁ ବଡସାଇଁ
ହେ ନୀଳାଦ୍ରୀଶ
ବଇରାଗିଏ ଛନ୍ତ ବେଢି
ବଦେହ ପୁରେ ଲୀଳା ବାଟି
ବିଭୀଷଣ ବଧତ          ବଦେହ ବାଳୀ କାନ୍ତ
ବାନର ପତି ଦଳେ ବେଢି ॥

---

ରମତାରକ ମନ୍ତ୍ରର ମାଧବ ଭଞ୍ଜକବି ଜଗନ୍ନାଥଙ୍କୁ ଯୁକ୍ତିରେ ରାମଚନ୍ଦ୍ର ବୋଲି ପ୍ରମାଣ କରିଛନ୍ତି । ସେ କହନ୍ତି ବ୍ରାହ୍ମଣ୍ୟ ଧର୍ମିଗଣ ଆପଣଙ୍କୁ ବ୍ରହ୍ମ ବୋଲି କହନ୍ତି । ପଣ୍ଡିତମାନେ ବୁଦ୍ଧାବତାର ବୋଲି କହିଛନ୍ତି "ପ୍ରବୁଦ୍ଧ ବୁଦ୍ଧ ଅବତାର ବିଜୟ ଶ୍ରୀ ନୀଳକନ୍ଦରରେ" । ମାତ୍ର କବି ବୁଦ୍ଧିଦ୍ୱାରା ବିଚାର କରୁଛନ୍ତି ଯେ ଦଣ୍ଡଛତ୍ର ଲାଗି ହେତୁ-ଥିବାରୁ ଆପଣ ବାହୁକ ଯେ ବାନର ଶ୍ରେଷ୍ଠଙ୍କର ବନ୍ଧୁ ରାମଚନ୍ଦ୍ରଠାକୁର ଅଟନ୍ତି । ହେ ନୀଳାଦ୍ରୀଶ, ଏହାର ପ୍ରମାଣ ରାମାନୁଜୀ ବା ରାମାନନ୍ଦୀ ରାମାନୁଜୀବୈଷ୍ଣବ ମଠମାନ ଶ୍ରୀମନ୍ଦିରର ଚାରିପଟେ ବେଢ଼ି ରହିଛନ୍ତି ପୁଣି ବର୍ଷକେ ଥରେ ଆପଣ ଜନକ ପୁର ବା ଗୁଣ୍ଡିଚା ଘରେ ଲୀଳା କରୁଛନ୍ତି । ଗୁଣ୍ଡିଚା ଯାତ୍ରା ବିଭୀଷଣଙ୍କ ନାମରେ ସ୍ୱତନ୍ତ୍ର ଆରତି

ହେଉଅଛି । କେଣ ଆପଣ ସୀତାକାନ୍ତ ରମଚଂନ୍ଦ୍ର ଅଟନ୍ତି । ସର୍ବୋପରି ସିଂହଦ୍ୱାରରେ ସିଦ୍ଧଫତେ ହନୁମାନ, ଦକ୍ଷିଣ ଦ୍ୱାରରେ ବାବଗ୍ଭଜ ହନୁମାନ, ଉତ୍ତର ଦ୍ୱାରରେ ତପସ୍ୱୀ ହନୁମାନ, ପଶ୍ଚିମ ଦ୍ୱାରରେ ବୀର ହନୁମାନ, ମନ୍ଦିର ଉପରେ କପିକେତନ ହନୁମାନ ତଥା ସମୁଦ୍ରର ଘାଟମାନଙ୍କରେ ରହିଥିବାରୁ ପୁଣି ଉତ୍ସବରେ ହନୁମାନ (ହୁତଙ୍ଗ ହନୁମାନ ଙ୍କୁ ସଙ୍ଗରେ ନେଇ ଯାଉଥିବାରୁ ଏପରି ଧାରଣାରେ ଶାସ୍ତ୍ର ସମ୍ମତ ପ୍ରମାଣ ପାଇ ଭକ୍ତବୀର ଜଗନ୍ନାଥଙ୍କୁ ରମଚଂନ୍ଦ୍ର ବୋଲି ଗ୍ରହଣ କରିଥିବା ତାହାଙ୍କର ରମଭକ୍ତିର ପରିଚାୟକ ଅଟେ ।

ଭବ, ଭୟଭଞ୍ଜନ    ଭଙ୍ଗୁର ଜୀବନ
ଭଜନେ ଲାଗେ ଭୁଲିଯାନ୍ତି
ଭୂତିକୁ ଭୂତେ ଜାଣି    ଭବ୍ୟ ଭବନ ମଣି
ଭବ ଘରକୁ ଭୁଲିଥାନ୍ତି
ହେ ନୀଳାଦ୍ରୀଶ ।
ଭୋଳା ଯେ ଭୋଳଭାବ ଭଳି
ଭୋଳ ନ ହୁଅ ଭାବଗ୍ରାହୀ
ଭବାନୀ ଭ୍ରମଣିକୁ    ଭୁଲି ଭୋଗ ଭୋଗକୁ
ଭରସା କରି ଭାବେ ଥାଇ ।।

---

ଆପଣ ସଂସାରର ସ୍ୱାମୀ, ସଂସାର ଭୟକୁ ମୋଚନ କର ଜାଣି କ୍ଷଣଭଙ୍ଗୁର ଜଗତର ଜନମାନେ ଭକ୍ତିରେ ଜଗତକୁ ଭୁଲିଯାନ୍ତି । ଆପଣଙ୍କର ଭୂତୀ ଯେ କ୍ଷମତାକୁ ପ୍ରାଣୀମାତ୍ର ଜାଣି ଆପଣଙ୍କର ପ୍ରାସାଦକୁ ମେଣୀୟ ସୁଖପ୍ରଦ ସ୍ଥାନ ଜାଣି ସଂସାର ଘର ଭୁଲିଯାନ୍ତି । ହେ ନୀଳାଦ୍ରୀଶ ପ୍ରଭୁ ଶଙ୍କର ଆପଣଙ୍କର କୈବଲ୍ୟ ଭାବରେ ଭୋଳ ହୋଇ ଥିବା ଜଣାଶୁଣା । ଆପଣ ଭାବଗ୍ରାହୀ ଭୋଳ ହୋଇ ଯାଅନ୍ତି ଭବାନୀ ଯେ ଆଦ୍ୟାଶକ୍ତି ନିଜରଭ୍ରମଣ ତ୍ୟାଗ କରି ନିତ୍ୟ ଆପଣଙ୍କର

ଭୋଗ ଯେ ପ୍ରସାଦ ଭୋଜନ ଆଶାରେ ଭବମୟୀ ରୂପରେ ଭରସା କରି ରହିଛନ୍ତି । ଅର୍ଥାତ୍ ଭଗବାନ ଙ୍କର ମହାପ୍ରସାଦର ପ୍ରାପ୍ତିରେ ଆନନ୍ଦ ହୋଇଯିବା ଦେଖି ମା' ବିମଳା ନିତ୍ୟ ସେହି ଦେବ ଦୁର୍ଲଭ କୈବଲ୍ୟକୁ ପାଇବା ଆଶାରେ ଶ୍ରୀକ୍ଷେତ୍ରରେ କ୍ଷେତ୍ରେଶ୍ୱରୀ ରୂପରେ ରହିଛନ୍ତି । ମତ୍ସ୍ୟପୁରାଣ, ଦେବୀଭାଗବତ ଓ ତନ୍ତ୍ରରେ ବିମଳା ଭୈରବୀ ଯତ୍ର ଜଗନ୍ନାଥସ୍ତ ଭୈରବଃ ବାକ୍ୟ ଦେଖିବାକୁ ମିଳେ ଓ ଶ୍ରୀକ୍ଷେତ୍ରରେ ବିମଳା ଜଗନ୍ନାଥଙ୍କ ମହାପ୍ରସାଦ ବ୍ୟତୀତ ଅନ୍ୟ କୌଣସି ଦ୍ରବ୍ୟ ଭୋଗ ଆକାରରେ ଗ୍ରହଣ କରନ୍ତି ନାହିଁ । ତେଣୁ ଉକ୍ତ କୈବଲ୍ୟ ସେବା ତାଙ୍କର ନିତ୍ୟ କାମ୍ୟ ଅଟେ ।

ମର କେ ମନନରେ ମରମ ମଜ୍ଜି ପାରେ
ଅମରେ ମର ମନାସନ୍ତି
ମଞ୍ଜୁଳ ମୁଖ ଶିରୀ ମହତ୍ତ ମନେ ବାରି
ମୁଖକୁ ମାନ୍ୟ ନ ମଣନ୍ତି
ହେ ନୀଳାଦ୍ରୀଶ ।
ମୁନି ମାନସେ ଏଡା ମାନି
ମହୀମହାରେ ଅବଧାନି
ମାଧବ ମଧୁହାସ ମନ୍ତ୍ର ମାଧୁରୀ ସୁରୀ
ମଣ୍ଡଳ ମାନ ଆବରନ୍ତି ।।

---

କେଉଁ ମର ମାନବ ମନନ ଦ୍ୱାରା ଆପଣଙ୍କର ମର୍ମ ଜାଣିପାରେ ଯେଉଁଠାରେ କି ଅମର ଦେବଗଣ ମରଦେହରେ ସେବା କରିବାର ଲୋଭ ରଖନ୍ତି । ଆପଣଙ୍କର ରମଣୀୟ ମୁଖର ସୌନ୍ଦର୍ଯ୍ୟକୁ ଶ୍ରେଷ୍ଠ ମନେକରି ମଖ ଯେ ଯଜ୍ଞାଦି ଆସ୍ୱରକୁ ମନରେ ଗୁରୁତ୍ୱ ପ୍ରଦାନ କରନ୍ତି ନାହିଁ । ମୁନୀ ଯେ ଅଙ୍ଗୀରସ, ମାର୍କଣ୍ଡେୟ, କଣ୍ଡୁ, ଭୃଗୁ ଏ ସ୍ୱରିଜଣ ପୃଥ୍ୱୀ ମଧ୍ୟରେ ମହୀର ଯେ ପୁରୁଷୋତ୍ତମ ଏଠାରେ ଜାଗ୍ରତ ଭାବରେ

“ଧୂନା” ଜାଗ୍ରତ କରି (ଅବଧାନୀ) ମାଧବ ମଧୁସୂଦନାଦି ମନ୍ତ୍ର ଜପ-କରି ମନ୍ଦିରର ଚତୁର୍ଦ୍ଦିଗରେ ମଣ୍ଡଳ ବା ଆଶ୍ରମ ମାନଙ୍କର ସ୍ମୃତିରକ୍ଷା କରି ରହିଛନ୍ତି । ଏହା କ୍ଷେତ୍ରବରର ଋଷି ଆଶ୍ରମ ନାମରେ ଖ୍ୟାତ ।

ଯମ ଯାତନା ଯାଚ୍ୟ (୧) ଯୋଗୀ ସନ୍ନ୍ୟାସିକ
ଯାଚକ ପଣେ ଯଣ ଥାଇ
ଯାଜ୍ଞକ ନୋହେ ଯାଜ ଯାଯଯୂକ ମୁଁ ସାଜ
ଯାମ, ଯାମିନୀ ଯାକ ଯାଉ
ହେ ନୀଳାଦ୍ରୀଶ
ଯାମ୍ୟ ଯାନରେ ମୋର ମନ
ଯୋଗ ଯାଗକୁ ଅଭାଜନ
ଯୋନୀ ଯାତ୍ରା କାଳରେ ଯଜ୍ଞାଗ୍ନି ଯାତନାରେ (୨)
ଯଂକ୍ଷଣ ଯତ୍ନେ ଥାଉ ମନ ॥

---

ଯେଉଁଠାରେ ଯମର ପ୍ରବେଶାଧିକାର ନାହିଁ ଅର୍ଥାତ କଠିନ ଅଟେ । ଯୋଗୀଯତି ଋଷ ଯେଉଁ କ୍ଷେତ୍ରର କ୍ଷେତ୍ରପାଳ (ଯାମିକ) ଅଟନ୍ତି । ସେଠାରେ ଭିକାରୀ ହେବାର ଯାହାହିଁ ମୋର କାମ୍ୟ । ଭକ୍ତ କହୁଛନ୍ତି ହେ ଯଜ୍ଞଦେବ ମୁଁ ଧର୍ମଜ୍ଞ ଯାଜକ ନୁହେଁ, ମୁଁ ଭିକାରୀ ଭାବରେ ଦିବସ ଓ ରାତ୍ରୀ କଟାଇବାକୁ ଆସିଅଛି । ହେ ନୀଳାଦ୍ରିଶ ଯାମ୍ୟ ଯେ ଦକ୍ଷିଣ ଦିଗସ୍ଥ ସ୍ୱର୍ଗଦ୍ୱାରରେ ମୋର ମନ ବା ଲକ୍ଷ୍ୟ ରହିଅଛି । ମୁଁ ତ, ଯୋଗ ଯାଗ କରିନାହିଁ (ଅଭାଜନ) ଯୋନୀଯାତ୍ରା କାଳରେ ଅର୍ଥାତ ଶେଷ ସମୟରେ କିପରି ବୈଷ୍ଣବାଗ୍ନିରେ ମୋର ଶରୀର ଦହନ ହେବ, ହେ ଯଜ୍ଞାବତାର ଏହି ଦିଗରେ ମୋର ଯତ୍ନ ଥାଉ ।

(୧) ସ୍କନ୍ଦ ପୁରାଣାନ୍ତି ଜଗନ୍ନାଥ ମହାତ୍ମ୍ୟରେ ଏହା ଯମନିକ କ୍ଷେତ୍ର ରୂପରେ ପ୍ରସିଦ୍ଧ ।

ଜଳେ ଚ ବଦରି ଶ୍ଚୈବ ସ୍ଥଳେ ଚ ଗୋକୁଳଂ ସ୍ତଥା
ଜଳେ ସ୍ଥଳେ ଚାନ୍ତରୀକ୍ଷେ ମୁକ୍ତି ଶ୍ରୀ ପୁରୁଷୋତ୍ତମେ

(୨) ଜଗନ୍ନାଥ କ୍ଷେତ୍ରରେ ଯେଉଁମାନଙ୍କର ମୃତ୍ୟୁ ହୁଏ ସେମାନେ ମୁକ୍ତ । ଏହା ବ୍ୟତୀତ ଯେଉଁ ସେବା, ଜାତୀ ପ୍ରାପ୍ତ ବିଶଷ୍ଟ ସମ୍ମାନିତ ବ୍ୟକ୍ତିଙ୍କର ପରଲୋକ ଘଟେ ତାଙ୍କର ମୃତ୍ୟୁ ମାତ୍ରେ ରାଜାଦେଶ ପ୍ରମାଣରେ ତାହାଙ୍କୁ ମନ୍ଦିରର ପବିତ୍ର ଅଗ୍ନି ଦାହ କ୍ରିୟା ପାଇଁ ମିଳିଥାଏ ଏହାହିଁ ସୌଭାଗ୍ୟ ବୋଲି ଜଗନ୍ନାଥଙ୍କର ଚରଣାଶ୍ରିତ ମାନଙ୍କର ନିଶ୍ଚିତ ଧାରଣା । ଏହି ବିଷୟରୁ ଜଣାଯାଉଛି ଭଂଜ କବିସମ୍ରାଟ ରୂପରେ ସେବାଜାତୀ ପାଇଥିଲେ ।

ରସିକ ରସେରତ                    ରତିକରେ ରହିତ
ରମା ରମଣ ରମଣୀୟ
ରହୁ ରେଖରତନ                    ରେଖରେ ଗୋରଚନ
ହେଉ ବାହାକୁ କଲ ଥୟ
ହେ ନୀଳାଦ୍ରୀଶ
ରଞ୍ଜକ ରଭ ରଙ୍ଗ କଲ
ରଥେ ରଥାଙ୍ଗ ଆରୋପିଲ
ରକ୍ଷକ ଶିରୋମଣି                    ରାଜ ରଚର ମଣି
ରସାରେ ମାନ ପରଶିଲ ହେ ॥

ଭଂଜ କହନ୍ତି ହେ ନୀଳାଦ୍ରୀଶ ଆପଣ ରସିକଜନଙ୍କର ମହାଭାବରେ ମୋହିତ ଅଛନ୍ତି । ରସିକ ନାମକ ତୋରରେ ରୂପାହୋଇ ଦ୍ରବ୍ୟ ମାଧ୍ୟମରେ ଗୁଣ ପ୍ରକାଶ କରୁଅଛନ୍ତି । ଆପଣଙ୍କ ରହୁରେଖ

(ମୟୂରକର ବର୍ଣ୍ଣଭୂଷଣ) ରତ୍ନଜଡିତ ଚିତା, ପୁଣି ରେଖାଙ୍କିତ ଗୋରଚନ-ତିଳକ ଦେଖି ମୁଁ ଧ୍ୟାନ ରୂପରେ ଭରସା ସ୍ଥାପନ କଲି । ଧନ୍ୟ ସେ ଚିତ୍ରକାର ଶ୍ରୀବିଗ୍ରହରେ ରତି ବା ଭାବର ମିଳନାତ୍ମକ ରଙ୍ଗ ବ୍ୟବହାର କଲା, ତଳେ ଶୁକ୍ଳବର୍ଣ୍ଣ ଉପରେ କୃଷ୍ଣବର୍ଣ୍ଣ ରଙ୍ଗ ଦେଇ ରାଧା ଓ କୃଷ୍ଣଙ୍କର ମିଳନାତ୍ମକ-ବିଗ୍ରହ ରୂପରେ ବ୍ୟକ୍ତକଲା ଓ (ଶ୍ରୀମଦ ଭାଗବତ ୧୧ଶ ସ୍କନ୍ଦ ୫ମାଧ୍ୟାୟରେ କଳିଯୁଗର ଦେବଶ୍ରେଷ୍ଠଙ୍କୁ "ଶୁକ୍ଳବର୍ଣ୍ଣ ତ୍ୱିଷା କୃଷ୍ଣ" ଶବ୍ଦରେ ଗ୍ରହଣ କରିଅଛନ୍ତି) ପୁଣି ଧନ୍ୟ ସେ ଚିତ୍ରକାର ଯେକି ରଥ ଯେ ମନ୍ଦିର ତାହାର ଉପରେ ରଥାଙ୍ଗ ଯେ ଚକ୍ର ତାହାକୁ ସ୍ଥାପନ କରି ରକ୍ଷକ ଶୀରୋମଣି ବୋଲି ରମଣୀୟ ରୁଚୀ ତା ସୁନ୍ଦର ଭାବ ପ୍ରକାଶ କଲା । ଏହାଦ୍ୱାରା ଆପଣ ପୃଥିବୀରେ ମାନବ ରୂପରେ ଖ୍ୟାତ ହେଲେ । ଅର୍ଥାତ ଆପଣହିଁ ଏକମାତ୍ର ଅମାନୀ ପୁଣି ମାନବ ଅଟନ୍ତି ଯେ କି ଅଂକିଞ୍ଚନ ଓ ଅଧସ୍ତନଙ୍କୁ ଉଚ୍ଚସ୍ଥାନ ଦେଇ ଆପଣାକୁ ପ୍ରଚ୍ଛନ ରଖି ଆତ୍ମସୁଖ ଅନୁଭବ କରନ୍ତି । ଏହାହିଁ ଆପଣଙ୍କର ରୂଚୀର ରୁଚି ଅଟେ ।

ଲବଣସିନ୍ଧୁ ଲଦେ ଲଂଘି ଲମ୍ଭନ ଲଗେ
ଲଲନ୍ତେ, ଲଂଗୁଡ଼େ ଲୁଞ୍ଚିତ
'ଲ' ଭୁବନ ସହ୍ୱଲ ଲହଡ ଲଦୁ କଲ
ଲଲନା, ଲଞ୍ଛନା ସହ୍ୱତ
ହେ ନୀଳାଦ୍ରୀଶ
ଲାବଣ୍ୟ ଲପନ ଦର୍ଶନ
ଲଲଚ ଯାହାକୁ ଧ୍ୟାନ
ଲସୁ ରଖି ଲାଳସା ଲବେ ପୁରଥ ଆଶା
ଲସୁ ମୋ ଲଦେବ ନମଣ ହେ ॥

ଏକଦା ଲବଣସିନ୍ଧୁ ତାହାର କୂଳଙ୍କୁ ଲଂଘନ କରି, ଲମ୍ଭନ ଯେ ଶିବ 'ଲୋକନାଥ'ଙ୍କ ପର୍ଯ୍ୟନ୍ତ ଲାଗିଗଲେ । ତାହାଙ୍କର ଏବଂଭୂତ ଲଡ଼ନ

ବା ବଢ଼ି ଆସିବାର ପରିଣାମରେ ପ୍ରଭୁ ହନୁମନ୍ତଙ୍କୁ ଆଦେଶ ଦେଇ ତାହାଙ୍କର ବଳ ପରାକ୍ରମରେ ବରୁଣରାଜଙ୍କୁ ଲାଞ୍ଛନା ବା ଅପମାନ କରାଇଥିଲେ । ଏବେ ସେହି ହନୁମାନ ମଧ୍ୟ ଜଳହତିକୁ ରୋକିବା ନିମନ୍ତେ ରହିଅଛନ୍ତି । ତାହାଙ୍କର ଏହି କୃତ୍ୟାନୁସାରେ ତାହାଙ୍କୁ ଦରିଆ ହନୁମାନ କୁହାଯାଉଛି । ଆପଣ ବରୁଣଙ୍କର 'ଜ' ଭବ ବା ଇନ୍ଦ୍ରପଣିଆକୁ ସହିନପାରି ତାହାଙ୍କର ଜଳହତିକୁ କ୍ଷୁଦ୍ର କରାଇଲ (ଯେପରି କି ଶବ୍ଦ ମନ୍ଦିର ମଧ୍ୟକୁ ନଶୁଭିବ) ମାତ୍ର ସାଗର ତନୟା ଆପଣଙ୍କୁ ଏଥିପାଇଁ ଲାଞ୍ଛନା ଦେବାରୁ, ଆପଣଙ୍କର ସୁନ୍ଦର ମୁଖ ଦର୍ଶନ ମୂଳକ ମନୋଜ୍ଞ ଯାତ୍ରା ବିଧାନ କଲ (ଅର୍ଥାତ ପ୍ରତି ଅମାବାସ୍ୟାକୁ ଆପଣାର ସୁଖବର୍ଦ୍ଧନ ଓ ବରୁଣରାଜାଙ୍କୁ ଦର୍ଶନ ଦେବା ନିମନ୍ତେ ସମୁଦ୍ରକୂଳକୁ ବିଜେହୋଇ ତାହାଙ୍କୁ ସନ୍ତୋଷ କରାଇଲେ) ଯେ ଜଳସାୟୁଜ୍ଜ ଜୟ ରଖିଲେ ବୋଲି, କ୍ଷଣକେ ତାଙ୍କ ଆଶା ପୂର୍ଣ୍ଣ ହେଲା । ମୋହର ଜୟ ବା ଚରଣାରବିନ୍ଦରେ ଅଣାକୁ ଲାଘବ ନମଣ । ଏତିକି ନିବେଦନ କରୁଛି ।

ବରିଷ୍ଟ ବଟ ବାସୀ          ବସ୍ତୁରେ ବାସେ ବସି
ବନ୍ଦାରେ କ ବାରେ ବନ୍ଧବ ?
ବଲ୍ଗୁ ବଳସ୍ଥ ଦେନ,          ବଲ୍ଲଭ ଭବ ଆଣି
ବାଡବେ ବଭ୍ରୁ ବନ୍ଦେକବ
ହେ ମଳାଦ୍ରୀଶ
ବକ୍ଷଣେ ବାରସୂତା ବାଣ
ବାହୁଡ଼ ବଣା ଦଣା ଧର
ବାଚକ ପଣ ବର          ବାଦ୍ୟବାଦନୀ ହେର
ବଚନ ବବୃତ ବର୍ଜିତ ହେ ॥

---

କବି ସମ୍ରାଟ ଏ ପଦରେ ପ୍ରଭୁ ଜଗନ୍ନାଥଙ୍କୁ କଳ୍ପବଟର ମୂଳ ତଥା ଅଧୀପ ବୋଲି ସମ୍ବୋଧନ କରି ଉପରେ ବସି ବିସ୍ତର କରୁଛନ୍ତି ହେ.

ବରିଷ୍ଠ ଦେବତା ! କେଉଁପରି ଆପଣଙ୍କୁ ବନ୍ଦନ କରିବି ବା କଅଣ ଘେନି ଭେଟିବି ? ସୁନ୍ଦର ଚଳୟ ବା ସୁବର୍ଣ୍ଣ କଂକଣଟିଏ ଘିୟଖବତରେ ଘେନି ବାଡଭିମଧ୍ୟରେ ବା ବଡଦେଉଳ ଠାକୁର ଆପଣଙ୍କୁ ଭେଟିବାକୁ ଯାଇ ଦେଖିଲି ବାରିଧିସୁତା ଯେ ମହାଲକ୍ଷ୍ମୀ, ଆପଣଙ୍କ କୋଳରେ ବିରାଜିତା ଅଛନ୍ତି । ବଣା ଯେ କଲ୍ୟାଣୀନା ନାରୀ ତାହାରି ବଣା ପ୍ରମାଣରେ ଯେଠାରୁ ଫେରି ଆସିଲି । ପୁଣି କବିପଣରେ ଶ୍ରେଷ୍ଠୀହୋଇ (କବିତା ଦ୍ୱାରା) ବନ୍ଦନ କରିବା ବିଚାର କରି ଦେଖିଲି ବାଗବାଦିନୀ ସରସ୍ୱତୀ ମଧ୍ୟ ଏକ ସ୍ଥଗରେ ବିରାଜମାନ ଅଟନ୍ତି । ତେଣୁ ମୋ ମୁହଁରୁ କଥା ବାହାରିଲା ନାହିଁ । ମୋର ବାଣୀ ମଧ୍ୟ ପରାହତ ହେଲା ।

ଦ୍ୱାରେ ଶୋଭନଶି ଶଂକୋଚେ ଭେଟମଣି
ଶ୍ୟାମ ଶୈଳପୂରେ ଗଲି
ଶୀରରେ ଶର୍ଣ୍ଣୀପମ ଶାଶ୍ୱତ ମଣିଧାମ
କ୍ରୋଡ଼େ ଦେଖି ଶୁଖିଗଲି
ହେ ନୀଳାଦ୍ରୀଶ
ସଂସାର ଉକ୍ତ ଶବ୍ଦଶିବ,
ଶରଣ ଶ୍ରେୟ ଏକ୍ସିଠାବ,
ଶେଷରେ ମୁଁ ଶରଣ, ଶେଷଜ୍ଞଶ ପଦେଶ
ପଡ଼ିବା ଶିବ ଶ୍ରେୟ କଲି ହେ ।।

---

ଉକ୍ତ ପଦର ପୂର୍ବପଦ ସଂଗେ ସନ୍ଧ ଅତି ରମଣୀୟ ଅଟେ । ଭକ୍ତଶ୍ରେଷ୍ଠ କହୁଛନ୍ତି ବଚନ ବିକୃତ ନକରିପାରି ଶ୍ରଦ୍ଧାରେ ଏକ ମାଣିକ୍ୟ ଥିବାକୁ ଶଂକୋଚ ଭାବରେ ଭେଟି ଦେଇ ବା ଭେଟିବା ନିମନ୍ତେ ନେଇ ନୀଳଶୈଳଭବନକୁ ଚଳି । ମାତ୍ର ଶାରଦେଶରେ ଚନ୍ଦ୍-

ପରି ତେଜୀୟାନ ହିସବିତା ଦେଖି ମୁଁ ଶୁଖିଗଲି ବା ହତାଶ ହୋଇଗଲି ହେ ନୀଳାଦ୍ରୀଶ ।

ଶକ୍ର ଯେ ଇନ୍ଦ୍ର ଓ ଶିବ ଯେଉଁଠାରେ ସ୍ତବଗାନରତ ସେଠାରେ ଶରଣାଗତି ହିଁ ଶ୍ରେୟ ଅଟେ । ଏହି ବିଶ୍ୱରରେ ଅନ୍ତଃଗଦ୍ୱା ହେ ଶେଷଦେବଙ୍କର ବନ୍ଦିତ ସ୍ୱାମୀ, ଆପଣଙ୍କର ମଙ୍ଗଳପ୍ରଦ ଚରଣରେ ଶରଣ ପଶିବା ହିଁ ଶ୍ରେୟ ମନେକରୁଅଛି ।

ଷଡ଼ଚ୍ଛନ୍ଦ ବନ୍ଧନ ଷଡ୍‌ଚକ୍ର ଭେଦନ
ଷୋଢ଼ା, ସାଧନେ ଧ୍ୟାନ ଜ୍ଞାନ
ଷୋଡ଼ଶ ଉପଚାର ଷଡ଼ାଙ୍ଗର ବସ୍ତୁର
ଷଟ୍‌କର୍ମେ, ମୁଁ ଯେ ସଦା ହୀନ
ହେ ନୀଳାଦ୍ରୀଶ
ଷୋହଳ ଖମ୍ବ ଦେଇ ଶୀର ।
ଷୋଡ଼ଶ କଳାଘାଟ ଦ୍ୱାର ।
ଷଡ଼ପଦ ପ୍ରମାଣେ ଭେଦ ଷୋଡ଼ଶ ଗାନେ
ଷଡ୍‌ବର୍ଗ ଜଣିବା ହିଁ ସାର ॥

---

ମୁଁ ଷଡ଼େନ୍ଦ୍ରିୟ ଶ୍ରୋତ୍ର ଚକ୍ଷୁ ରସନା ଘ୍ରାଣାଦିକୁ ବାନ୍ଧିନାହିଁ । ମୂଳାଧାର, ସ୍ୱାଧିଷ୍ଠାନ ଅନାହତାଦି ଚକ୍ରମାନଙ୍କୁ ଭେଦିନାହିଁ । ଷୋଢ଼ାନ୍ୟାସାଦି ମନ୍ତ୍ରସାଧନରେ ମୋର ଜ୍ଞାନର ଅଭାବ ।

ଆସନ, ପାଦାସନ, ପାଦ୍ୟାର୍ଘ୍ୟାଦି ଷୋଡ଼ଶ ଉପଚାର ଯେଉଁଠିରେ ଆପଣଙ୍କର ନିତ୍ୟ ପୂଜା ହୁଏ ସେଠିରେ, ପୁଣି ବେଦାଙ୍ଗ, ଉପନିଷଦ, ଅଧ୍ୟୟନ, ଅଧ୍ୟାପନାଦି ଷଟ୍‌କର୍ମରେ ମଧ୍ୟ ମୁଁ ନିପୁଣ ନୋହେ ନୀଳାଦ୍ରିନାୟକ ।

ହେ ପ୍ରଭୁ ଷୋହଳ ଖମ୍ବ (ଜଗମୋହନରେ ଥିବା ୧୬ ଗୋଟି ସ୍ତମ୍ଭ ଯେଉଁଥିରେ ୧୬ ସିଦ୍ଧିଙ୍କୁ ଭକ୍ତଗଣ ନମସ୍କାର କରନ୍ତି) ରେ କେବଳ ନମସ୍କାର କରି ଷୋହଳକଳା ଯେଉଁଠାରେ ଏକାଠି ହୋଇ ରହିଛନ୍ତି ସେହି ମୁଖ୍ୟଦ୍ୱାର ଦେଇ ଭ୍ରମଣ ରୀତିରେ ଷୋଡଶ ନାମ ବିଶିଷ୍ଟ ମହାମନ୍ତ୍ର "ହରେରାମ ହରେରାମାଦି" ଗାନ କରି କାମ, କ୍ରୋଧ, ମୋହ ମଦାଦି ଷଡ଼ଅପବର୍ଗକୁ ଜିଣିପାରେ ବୋଲି କହି, ଆଧ୍ୟାତ୍ମ-ବାଦର ଗୁଢ଼ ତତ୍ତ୍ୱକୁ ଏହି ପଦରେ ବିଚକ୍ଷଣତାର ସହିତ ପ୍ରକାଶ କରି ବାସ୍ତବରେ କବିତ୍ୱର ପ୍ରକୃଷ୍ଟ ପରିଚୟ ଦେଇଛନ୍ତି ।

● ଷୋଡ଼ଶାକ୍ଷରୀମନ୍ତ୍ର ଷୋଡଶାବୃତ୍ତି ମହାମନ୍ତ୍ରର ଅପର ନାମ କଳି ସନ୍ତରଣ ତାରକ ବ୍ରହ୍ମନାମ ଅଟେ ।

ସମ୍ବିଦ ସଂହିତାରେ                    ସମର୍ପଣ ସଂସ୍କାରେ
ସକୃତେ ସକାମ ସନ୍ଧ୍ୟାତ ।
ସହସ୍ର, ସାରସ୍ୱତ                    ସାୟୁଜ୍ୟଦ ସରତ
ସରୋଜ, ଚରଣେ ଅର୍ପିତ
ହେ ମଳାଦ୍ରୀଶ
ସାର୍ଥକ ସାଧନ ମୋ ଆଜ ।
ସୁକୃତ ସନାତନ ସଜ ।
ସେତୁ ସଂସାର ବାରି                    ସୁମର ଅନୁସର
ସ୍ତମ୍ଭ ସନ୍ନିଧେ ସୁରରାଜ ॥

---

ତୀକ୍ଷ୍ଣଜ୍ଞାନ ବିସ୍ତରରେ ସମର୍ପଣ ସଂସ୍କାରରେ ଥରେ (ସକୃତେ) ସକାମ ହେଲେ ମଧ୍ୟ ସହସ୍ର ସହସ୍ର ବାଣୀବନ୍ଧ ରଚନା ସାଯୁଜ୍ୟ ବା ମୁକ୍ତିପ୍ରଦ ତୀର୍ଥାଷ୍ଟକ ବା ଶିବ ବିରଞ୍ଚି ବନ୍ଦିତ ଗଙ୍ଗା ପରି ପବିତ୍ର ନଦୀ

ତୁଲ୍ୟ ପାପ ବିଷାଳକ ପାଦପଦ୍ମରେ ଅର୍ପଣ କରି ବା ଅର୍ପିତ ହେଲା । ମୋର ସମସ୍ତ ସାଧନ ଆଜି ସାର୍ଥକ ବା ଧନ୍ୟ ହେଲା । ଯେହେତୁ ଏହି ରଚନାମାନ ଶୁଦ୍ଧ, ସୁସାହିତ୍ୟ ଏବଂ ସନାତନ ବସ୍ତୁ ଓ ଜୀବନ୍ତ ଅଟେ । ସେଗୁଡିକ ଭବଜଳ ତରଣୀ ପ୍ରଭୁ ଭବାବ୍ଧିପୋତ ଦାରୁବ୍ରହ୍ମଙ୍କୁ ନିକରୂପେ ଜାଣି ସ୍ମରଣ ଓ ଅନୁସରଣ ବା ନୈଷ୍ଠିକ ଭକ୍ତି ଦ୍ୱାରା ନିରୂପଣରେ ସନ୍ନିଧାନରେ ସ୍ୱରାଟ ସମ୍ରାଟ ଜଗନ୍ନାଥଙ୍କ ଚରଣରେ ସମର୍ପଣ ହେଲା । ଏହି ପଦଟି ଉକ୍ତକୀୟ କବି ପଣ୍ଡିତ ସଙ୍ଘୀର ପଥ ପ୍ରଦର୍ଶକ ବା ଆଦର୍ଶ ଅଟେ । ଜଗନ୍ନାଥଙ୍କ ନିକଟରେ ସେ ସର୍ବସାଧନା ସାରସ୍ୱତକୁ ସମର୍ପଣ କରିଅଛନ୍ତି ।

ହଂସାରୁ ଅହଂକାର ହରି ହାଟକ କଲ
ହଂସ ଦୀକ୍ଷାକୁ ହାର କଲ
ହଳାହଳ ବଷାଦ ହେରି ତୋ ହଂସପାପ
ହସାଇ, ହଂସ ପ୍ରାପ୍ତ ହେଲ
ହେ ମାଳାଦ୍ରୀଶ
ହଂସ ପରମ ଆପଣତ
ହଂସ ଚରଣରେ ବରଜତ
ହର ହଳୀ, ହରଣୀ ହଟିବା ହେତୁ ଜାଣି
ହଟେ ହୁବକୁ କଲ ହତ ହେ ॥

---

ହେ ପ୍ରଭୁ ହଂସ ଯେ ଜୀବ ତାହା ମଧ୍ୟରୁ ଅହଂକାର ରୂପକ ବ୍ୟାଧିକୁ ହରଣ କରି ସୁବର୍ଣ୍ଣ ପ୍ରାୟ ଶୁଦ୍ଧ କରିଦେଲ । ଫଳରେ ସଂସାରରୁ ସାର ପଦାର୍ଥର ଆଦର୍ଶ "ସାରତତୋ ଗ୍ରାହ୍ୟମପାସ୍ୟ ଫଲ୍‌ଗୁ ହଂସୋ ଯଥା କ୍ଷୀରମିବାମ୍ବୁମଧ୍ୟାତ୍ 'ନ୍ୟାୟ' ରେ ଗ୍ରହଣ କରିବାକୁ ମୁଁ ନିଜର ଭୂଷଣ କଲି । ହଳାହଳ ବିଷ ପ୍ରାୟକୁ ଅପଦଙ୍କର ।

'ହଂସ ପଦ' ବା ପରମହଂସ ପଦକୁ ବିଲୋକନ କରି ଭୁଲିଯାଇ ହଂସ ଯେ ଯୋଗାରୂଢ ପୁରୁଷ ପ୍ରାୟ ହେଲି ଆପଣଙ୍କର ଶ୍ରୀମୁଖାରବିନ୍ଦ ଯେକି ସମ୍ପୂର୍ଣ୍ଣ ଉପନିଷଦର ହଂସବାଦ ପରି ତାହା ଦର୍ଶନ କରି ଯୋଗୀମାନେ ପରମହଂସତ୍ୱ ଲାଭ କରିଥାନ୍ତି । ଆପଣହିଁ ପରମ ହଂସ ବିଦ୍ୟାର ପ୍ରତୀକ, ହଂସ ଯେ ଯୋଗୀଗଣଙ୍କର ମଣ୍ଡଳ ମଧ୍ୟରେ ବିରାଜିତ । ଅର୍ଥାତ ଅଂଗୀର, କଣ୍ଵ, ମାର୍କଣ୍ଡେୟ, ଭୃଗୁ, ନାରଦ, ବାମଦେବ, ଦୀର୍ଘତମ, ମୁଦୁଗଲ୍ୟାଦି ଅଷ୍ଟ ସିଦ୍ଧଗଣ ଆପଣଙ୍କର ନିତ୍ୟ ପୂଜାର ପ୍ରସାଦ ପ୍ରାପ୍ତ ହୋଇଥାନ୍ତି । ଶିବ, ବଳଦେବ, ହରିଣୀ ଯେ ଲକ୍ଷ୍ମୀ ଏମାନେ ଅହଂକାର କରି ଆପଣଙ୍କର ମହତ୍ୱ ସମ୍ମୁଖରେ ପରାହତ ହୋଇଛନ୍ତି । ବହୁ କଷ୍ଟ ଭୋଗିଛନ୍ତି (ଲକ୍ଷ୍ମୀପୁରାଣ) ବଳଦେବ ଲକ୍ଷ୍ମୀଙ୍କ ପଦ୍ମ ଅହଂଭାବର ପରିଚୟ ଦେଇ ଓ ସ୍ୱୟଂ ମହାଲକ୍ଷ୍ମୀ ଅହଂକାର କରି ନବଦିନ ଯାତ୍ରାରୁ ବଞ୍ଚିତ ହୋଇଅଛନ୍ତି ଏବଂ ସାକ୍ଷାତ ଶିବ ଗରୁଡସ୍ତମ୍ଭ ପଛରେ ସ୍ତୁତିରତ ରହିଅଛନ୍ତି । ଏହି ଦୃଷ୍ଟାନ୍ତ ଦେଖି ହଂ ଯେ ଅହଂକାରର ଭୁବ ବା ବଳକୁ ପ୍ରତିହତ କଲି ବା ନାଶ କଲି ଅର୍ଥାତ୍ ଅହଂକାରକୁ ତ୍ୟାଗ କରିଲି ।

କ୍ଷମାନଧିଙ୍କୁ ବାଟରେ    କ୍ଷମସ୍ତୁ ଦର୍ଶନରେ
କ୍ଷିତ କ୍ଷାତିକୁ ସମର୍ପିଲି ।
କ୍ଷମ ମୋ ଅପରାଧ    କ୍ଷାମ ମୋ ଶୀବସାଧ
କ୍ଷାତ ଚରଣତଳେ ଦେଲି ।
ହେ ନୀଳାଦ୍ରୀଶ
କ୍ଷପୂତ ହେଲଣି ଏ ପିଣ୍ଡ
କ୍ଷାଲ ଏ ଜଂଜାଳରେ ଦଣ୍ଡ
କ୍ଷାନ୍ତି ଏ ଉପେନ୍ଦ୍ରର    କ୍ଷାତ କୁଳ ବେଭର
କ୍ଷେମ ଚରଣେ ହେଉ ରୁଣ୍ଡ ହେ ॥

ଅରେ ଆପଣଙ୍କପରି କ୍ଷମାଶୀଳ ଙ୍କର କ୍ଷେମ ବିଗ୍ରହ ଦର୍ଶନରେ ସଂସାରରେ ଅର୍ଜିତ ଖ୍ୟାତିକୁ ସମର୍ପଣ କରୁଛି, ମୋ ଅପରାଧ କ୍ଷମା କର ମୋ ଜୀବନର ଲକ୍ଷକୁ ପୂର୍ଣ୍ଣ କରିବା ପାଇଁ ସୁବିଦିତ ଶ୍ରୀଚରଣରେ ସମର୍ପଣ କରୁଛି ହେ ନୀଳାଦ୍ରୀଶ ମୋ ଶରୀରର କ୍ଷୟ ଅବସ୍ଥାକୁ ଆସିଲାଣି ଜାଗତିକ ଜଂଜାଳରୁ ମୁକ୍ତି ଦିଅ । ଉପେନ୍ଦ୍ର (ଭଂଜ)ର ସୁନାମ ତଥା ବଂଶମର୍ଯ୍ୟାଦା ଆପଣଙ୍କର କ୍ଷମାମୟ ଶ୍ରୀଚରଣରେ ମୁକ୍ତ ହେଉ ।

ଉପେନ୍ଦ୍ରଭଂଜ କବି ବିରଚିତ ନୀଳାଦ୍ରୀଶ ଚଉତିଶା । ଏ ପୋଥି ଘୁମୁସର ଭଞ୍ଜବିରବରଙ୍କ ଘୁମୁସର ମଠ ମୁକାମେ ପୁରୁଷୋତ୍ତମ କ୍ଷେତ୍ରେ ଲେଖନକାର ଦାମୋଦର ବଡପଣ୍ଡା ମୁକୁନ୍ଦଦେବ ମହାରାଜା-ଙ୍କର ବିଜୟ ଶୁଭରତ୍ୱେ ୧୩ ଅଙ୍କେ ଭଦ୍ର ଶୁକ୍ଳ ଦ୍ୱାଦଶୀ ଶୁଭ ସୁନିଆଁ ମହନ୍ତ ନାରାୟଣଦାସଙ୍କୁ ଭେଟି ।

୨ୟ ପୋଥି "ଭଂଜ"

